ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ସମ୍ପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ମାସିକ ସାହିତ୍ୟ ଇ-ପତ୍ରିକା

# ଆହ୍ୱାନ

୨ ସ୍ୱତନ୍ତ୍ର ପୂଜା ସଂସ୍କରଣ



ଅନ୍ଧ ଭିକାରୁଣୀ

ଶରଦାବାହନ

ନବଦୁର୍ଗା

ବସୁଧୈବ କୁଟୁମ୍ବକମ୍

ବହୁତ ମନେ ପଡ଼ନ୍ତି

ମୁଁ କିଏ

ଅଣୁ ଅଣୁରେ ବିଜ୍ଞାନ

ବିନ୍ଦୁ ଅପା

ମୋ ଶେଷ କବିତା

ଆସ ବୁଲିଯିବା - ମୁଖଲିଙ୍ଗମ୍ ଓ ଶାଳୀହୁନ୍ଦମ୍

ପୃଥ ପାଇଁ ଗୀତାର

ଅନନ୍ୟ ଓଡ଼ିଶା - ଗାନ୍ଧୀ ମନ୍ଦିର

ଅଶରୀରୀ ପ୍ରିୟତମା

## ଛାମୁ ଜାଣିଥିବେ

## ଜଗନ୍ନାଥଙ୍କ ଗୋଟିଏ ଆଖି

# ଆମର ଦାବୀ ପୂରଣ ହେଉ





# ଆହ୍ୱାନ

ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହତ୍ୟ ଇ-ପତ୍ରକା

ପ୍ରତଷ୍ଠାତା - ସମ୍ପାଦକ

## ଡା ଜ୍ୟୋତ ପ୍ରସାଦ ପଟ୍ଟନାୟକ

ଏମ୍.ବ.ବ.ଏସ୍., ପି.ଜ.ଡ଼ି.ଏମ୍.ସି.ଏଚ୍., ପି.ଜ.ଡ଼ି.ଏଚ୍.ଏମ୍.

ବୀମା ନଗର, ଦ୍ୱତୀୟ ଗଳ, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା
ଦୂରଭାଷ - ୯୦୪୦୯୮୫୪୬୩, ଇମେଲ୍ - aahwaan@gmail.com





'ଆହ୍ୱାନ'ରେ ପୂର୍ଣ୍ଣତଃ ମୌଳିକ, ଅପ୍ରକାଶିତ ଲେଖା ଗୁଡ଼ିକୁ ହିଁ ଲେଖାର ମାନ ଏବଂ ଭାଷା ତଥା ଉପାଦେୟତା ଆଧାରରେ ଚୟନ କରାଯାଇଥାଏ । କୌଣସି ବେନାମୀ ଲେଖା ଉପରେ ଆମର କୌଣସି କର୍ତ୍ତବ୍ୟ / ଦାୟିତ୍ୱ ରହିବ ନାହିଁ, ଯେତେବେଳ ଯାଏଁ କୌଣସି ସୂଚନା ବା ନିର୍ଦ୍ଦେଶ ଦିଆଯାଇନାହିଁ । ଲେଖାରେ ଦିଆଯାଇଥିବା ବିଚାର ଲେଖକଙ୍କର ସମ୍ପୂର୍ଣ୍ଣ ନିଜସ୍ୱ, ତାହା ଉପରେ ସମ୍ପାଦକ କିମ୍ବା ପ୍ରକାଶକଙ୍କ ସହମତ ରହିବ ବୋଲି କୌଣସି ଲିଖିତ ନିୟମ ନାହିଁ । ଯଦିଓ ସମ୍ପାଦକ ସବୁ ଲେଖାକୁ ଭଲ ଭାବରେ ପଢ଼ନ୍ତି ଏବଂ ବୁଝିବା ପରେ ହିଁ ପ୍ରକାଶିତ କରିଥାନ୍ତି । ତଥାପି ଲେଖାର ଶତପ୍ରତିଶତ ସତ୍ୟତାର ଦାବୀ କେବଳ ଲେଖକଙ୍କର । କୌଣସି ଲେଖାକୁ ନେଇ ଉଠିଥିବା ବିବାଦର ଉତ୍ତରଦାୟିତ୍ୱ କେବଳ ଲେଖାର ମୂଳ ଲେଖକଙ୍କର, ଏଥିରେ ସମ୍ପାଦକ କିମ୍ବା ପତ୍ରିକାର କୌଣସି ଉତ୍ତରଦାୟିତ୍ୱ ରହିବ ନାହିଁ ।

ଏହି ପତ୍ରିକାର କୌଣସି ଅଂଶ ବା ଲେଖା ସମ୍ପାଦକଙ୍କ ଲିଖିତ ଅନୁମତି ବିନା ଅନ୍ୟ କୌଣସି ମାଧ୍ୟମ (ପତ୍ର ପତ୍ରିକା / ଗଣମାଧ୍ୟମ / ସମ୍ବାଦପତ୍ର ଇତ୍ୟାଦି)ରେ ପ୍ରକାଶିତ କରିବା ଏକ ଅପରାଧ । ଦୟାକରି ଏହି ବିଷୟ ପ୍ରତି ବିଶେଷଧ୍ୟାନ ଦେବେ । ଲେଖକମାନେ ଚାହିଁଲେ ନିଜ ଲେଖାର ପ୍ରସାର ଓ ପ୍ରଚାର ହେତୁ ସେମାନଙ୍କ ଲେଖା ପ୍ରକାଶିତ ହୋଇଥିବା ପୃଷ୍ଠାମାନଙ୍କର ପ୍ରତିଛବି ଗଣମାଧ୍ୟମ ବା ଇଣ୍ଟରନେଟରେ ଦେଇପାରିବେ । ଏଠାରେ ଆମେ ଅନୁରୋଧ କରିବୁ ଯେ ଯେବେ ମଧ୍ୟ ଆପଣ ପତ୍ରିକାର କୌଣସି ଅଂଶ ଇଣ୍ଟରନେଟ / ଫେସବୁକ / ଟ୍ୱିଟରରେ ପ୍ରସାର କରୁଛନ୍ତି, ଦୟାକରି ଆମ ପତ୍ରିକାର ୱେବ୍‌ସାଇଟର ନାଁ (www.aahwaan.com) ଉଲ୍ଲେଖ କରିବାକୁ ଭୁଲିବେ ନାହିଁ ।





# ସମ୍ପାଦକଙ୍କ ଲେଖନୀରୁ



## ଆମ ଭାଷାସାହିତ୍ୟ ଉନ୍ନତ କରୁନାହିଁ କାହିଁକି ?

ଶାରଦୀୟ ପର୍ବ ଦଶହରା, ବର୍ଷର ଏକମାତ୍ର ସମୟ ଯେତେବେଳେ ଓଡ଼ିଆ ପତ୍ରପତ୍ରିକା ବଜାରରେ ଜୁଆର ଆସେ । ବର୍ଷ ସାରା ଅଣପ୍ରକାଶିତ ଅନେକ ପତ୍ରପତ୍ରିକା ଏହି କିଛି ଦିନପାଇଁ ମୁଣ୍ଡ ଟେକନ୍ତି । ଏହି ସମୟରେ ବିଭିନ୍ନ ପତ୍ରପତ୍ରିକାରେ ନିଜ ଲେଖା ପ୍ରକାଶିତ କରିବାପାଇଁ ଲେଖକଗୋଷ୍ଠୀ ମଧ୍ୟ ଅତ୍ୟଧିକ ଉତ୍ସାହ ଦେଖାନ୍ତି । ଏହା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଅନ୍ୟଭାଷା ଭାଷୀଙ୍କ ପରି ଆମ ଲୋକଙ୍କର କିନ୍ତୁ ସାହିତ୍ୟପ୍ରେମ ବର୍ଷର ଅନ୍ୟ ସମୟରେ କମିଯାଏ, ସେଇଥିପାଇଁ କାଁ ଭାଁ କିଏ କେଉଁଠି ପତ୍ରପତ୍ରିକାଟିଏ ପ୍ରକାଶ କରେ । ଯେଉଁ କେତୋଟି ସମ୍ମାନିତ ଓ ପ୍ରଶଂସିତ ପତ୍ରିକା ପ୍ରକାଶିତ ହୁଏ ସେ ସବୁ ବ୍ୟବସାୟିକ ଦୃଷ୍ଟିରୁ ସଫଳ ଗୋଷ୍ଠୀମାନଙ୍କ ଦ୍ୱାରା ପରିଚାଳିତ ହେଉଥିବାରୁ ସେମାନେ ବିଜ୍ଞାପନ ଯୋଗାଡ଼ କରି ପାରନ୍ତି ଏବଂ ପତ୍ରିକାକୁ ବଜାରରେ ଉପସ୍ଥାପନ କରିପାରନ୍ତି । ପତ୍ରପତ୍ରିକା କିଣୁଥିବା ଭଦ୍ରଲୋକଙ୍କୁ ଦେଖିବା ଇଦ୍‌ର ଜହ୍ନ ଦେଖିବା ପରି ମନେ ହୁଏ । ବିଭିନ୍ନ ସହରର ନ୍ୟୁଜ୍ ଷ୍ଟଲ୍ ମାନଙ୍କରେ ଯାଇ ପ୍ରଶ୍ନ କରନ୍ତୁ ସେମାନଙ୍କ ମୁଖର ଭାବଭଙ୍ଗୀମାରୁ ଜାଣିପାରିବେ ସେମାନେ କାହିଁକି ଓଡ଼ିଆ ପତ୍ରିକା ବିକ୍ରୟ କରିବାକୁ ଇଚ୍ଛା ପ୍ରକାଶ କରନ୍ତି ନାହିଁ ! ଆମ ସହରରେ ମଧ୍ୟ ଦୁଇ ତିନୋଟି ପ୍ରମୁଖ ବହି ଦୋକାନ ରହିଛି, ସେଇଠି ବି ସେଇ ଏକା ଅବସ୍ଥା । ହିନ୍ଦୀ, ଇଂରାଜୀ ଓ ଅନ୍ୟ ଭାଷାର ଅନେକ ପତ୍ରିକା ପଢ଼ିବାକୁ ମିଳେ, କିନ୍ତୁ ଓଡ଼ିଆ ଭାଷାରେ ହାତଗଣତି କେତୋଟି ମାତ୍ର ମିଳିଥାଏ । ଏଥିପାଇଁ ପ୍ରକାଶକଙ୍କୁ ଦାୟୀ କରୁନାହିଁ, ପାଠକ ନଥିଲେ କିଏ ବା କାହିଁକି ପତ୍ରିକାଟିଏ ପ୍ରକାଶ କରିବ ? ଏହି ଅବସ୍ଥା ବର୍ତ୍ତମାନ ଆମକୁ ଏମିତି ଏକ ସ୍ଥାନରେ ଆଣି ପହଞ୍ଚାଇ ଦେଇଛି, ଯେ ସ୍ୱତଃ ମନରେ ପ୍ରଶ୍ନ ଉଠୁଛି, “ଆମ ଭାଷା ସାହିତ୍ୟର ଗତି କେଉଁଆଡ଼େ ?”

କବିସମ୍ରାଟ ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ ବଳଦେବରଥ, ପରି ଅନେକ ରଥୀ ଓ ମହାରଥୀଙ୍କ





ଦ୍ୱାର୍ ସମୃଦ୍ଧ ଓଡ଼ିଆ ଭାଷାସାହତ୍ୟର ଅଧୋଗତ ପାଇଁ ଦାୟୀ କଏ, ସେହ ବଷୟରେ ପରଚର୍ଚ୍ଚାର ସମୟ ଆସିଛି । ଏହାର ଅନେକ କାରଣ ରହଛି । ଗବେଷଣା ତ କହ ପାରବା ନାହିଁ, କନ୍ତୁ ଆମେ ଅନେକ ବଷୟକୁ ହୃଦୟଙ୍ଗମ କର ଏହ ସବୁ କାରଣ ବଷୟରେ ଲେଖିବାପାଇଁ ଖୋରାକ୍ ପାଇଛୁ । ଅବଶ୍ୟ ଆମର ସମସ୍ତ କଥାରେ ପାଠକଗୋଷ୍ଠୀ ସହମତ ହୋଇ ନପାରନ୍ତ । ପ୍ରତ୍ୟେକ କାରଣକୁ ଅନେକ ଦଗରୁ ପରୀକ୍ଷା ନରୀକ୍ଷା କରବାପରେ ଆମେ ଏହାକୁ ଉପସ୍ଥାପନ କରୁଛୁ । ଅନେକ ବନ୍ଧୁ ଓ ସାହତ୍ୟକଙ୍କ ସହ ଚର୍ଚ୍ଚା କରବାପରେ ଆମେ ଏହ ନଷ୍କର୍ଷରେ ପହଞ୍ଚିଛୁ । ଗୁଳନ୍ତ ପଢ଼ିବା ଆଉ ଜାଣିବା ଆମେ ଉନ୍ନତ କରୁନାହେଁ କାହିଁକ ?

'ମୁଁ' ପଣରୁ ବାହାର 'ଆମେ' ପଣରେ ରହବାର ଅନଚ୍ଛା - ଏଠି ସମସ୍ତେ ବରେଣ୍ୟ ହେବାକୁ ଆଗଭର । ସେଥିପାଇଁ ଅନ୍ୟକୁ ନ୍ୟୁନ ବୋଲ ପ୍ରମାଣିତ କରବାକୁ ମଧ ପଛାନ୍ତ ନାହିଁ । ସମସ୍ତେ ସାଥୀ ହୋଇ ଏକତ୍ର ବଢ଼ିବା ବୋଲ କଥା କେବଳ ଶୁଣିବାକୁ ଭଲ ଲାଗେ ବୋଲ ଅନେକେ ମନେ କରନ୍ତ । ବାସ୍ତବକ ଜୀବନରେ କନ୍ତୁ ଏହାର ସମ୍ପୂର୍ଣ୍ଣ ବପରୀତ ମତ ରଖନ୍ତ । ସଭାସମିତରେ ଭାଗ ନେଉଥିବା ଅନେକ ବନ୍ଧୁ ପରୋକ୍ଷରେ ଅନ୍ୟମାନଙ୍କୁ ନ୍ୟୁନ ଦେଖାଇବା ପାଇଁ ନଜ ନଜ ମଧରେ କୁଚକ୍ରୀ ଚକ୍ରାଧାରାକୁ ବଢ଼ିବାକୁ ଦଅନ୍ତ । ଭାଷାର ଉନ୍ନତ ଅପେକ୍ଷା ଅନେକେ ଆତ୍ମବଡ଼ିମାକୁ ପ୍ରାଥମିକତା ଦଅନ୍ତ, ଯାହା ଆମ ଭାଷା ସାହତ୍ୟ ପାଇଁ ପରପନ୍ଥୀ । ତୁମେ ବ ଭଲ ଲେଖ, ମୁଁ ବ ଭଲ ଲେଖିବ, ଆମେ ସମସ୍ତେ ମିଳମିଶି ଲେଖିଲେ ହିଁ ତ ଆମ ଭାଷା ଆଗକୁ ବଢ଼ିବ । ହେଲେ ପ୍ରତଯୋଗୀତାମୂଳକ ଚକ୍ରାଧାରାରୁ ମୁକ୍ତି ମିଳଲେ ତ କଛ ହେବ ? ସମସ୍ତେ ତ ସମ୍ମାନ ଆଉ ପ୍ରତଷ୍ଠା ପଛରେ ଧାଇଁଲେ, ସେ ଯେମିତ ହେଉନା କାହିଁକ ଦରକାର ମାନେ ଦରକାର । କଏ ଚହ୍ନାପରଚୟ ଦେଖେଇ ସମ୍ମାନ ପାଇଲାଣି ତ କଏ ଧନ ଦେଇ ସମ୍ମାନ କଣିଲାଣି । ସେହ ପ୍ରକାରର ସାହତ୍ୟକଙ୍କ ଦ୍ୱାର୍ ଭାଷାର କଣ ଉନ୍ନତ ହେବ ? ଲୋକଙ୍କୁ ଦେଖାଇବା ପାଇଁ ଯେ ଲେଖିଲା, ଅନ୍ୟକୁ ନ୍ୟୁନ କର ନଜକୁ ବଡ଼ ବୋଲ ପ୍ରମାଣିତ କରବାପାଇଁ ସମ୍ମାନ ବା ପୁରସ୍କାର ପଛରେ ଧାଇଁଲା ସେ ସାହତ୍ୟକ ନୁହେଁ । ଆସ ଆମେ ସମସ୍ତେ ଲେଖିବା । ଆହ୍ୱାନ ଓଡ଼ିଆ ପରବାରର ଆହ୍ୱାନ ହିଁ ଏଇୟା, ଆମେ ସମସ୍ତେ ଲେଖିବା ପଢ଼ିବା ଆଉ ପଢ଼ାଇବା । ତା ହେଲେ ହିଁ ଆମ ଭାଷା ଉନ୍ନତ ହେବ ।

ଏକ ନୁହେଁ ଅନେକ - ଏମିତ କହବାର ଅର୍ଥ ହେଉଛି, ଆମ ରାଜ୍ୟର ଉଣାଅଧିକେ ସବୁ ଛୋଟବଡ଼ ସହରମାନଙ୍କରେ ଅନେକ ସାହତ୍ୟାନୁଷ୍ଠାନ ମାନ ରହଛି । ଗୋଟିଏ ସହରରେ





ଏକାଧିକ ସାହିତ୍ୟାନୁଷ୍ଠାନ ? କାହିଁକି ? କାରଣ ଏଠି କେହି କାହାର ଶୀର ଦେଖିପାରୁନାହାନ୍ତି । ଯଦି କୌଣସି ଲେଖକକୁ ଗୋଟିଏ ସ୍ଥାନରେ ସମ୍ମାନ ମିଳିଲା ନାହିଁ, ସେ ଅନ୍ୟ ସ୍ଥାନରେ ଯୋଗଦେବ କିମ୍ବା ନିଜେ ଗୋଟିଏ ଗୋଷ୍ଠୀ ନିର୍ମାଣ କରିବ । ଏଇଥି ହିଁ ତ ହେଉଛି । ବ୍ରହ୍ମପୁର ପରି ସହରରେ ଅନ୍ୟୁନ ଦେଢ଼ ଡଜନ ସାହିତ୍ୟ ଗୋଷ୍ଠୀ । ଏହି ସବୁ ଗୋଷ୍ଠୀରେ ଅନେକ ସଦସ୍ୟ ଅଛନ୍ତି ଯେଉଁମାନେ ଏକାଧିକ ସ୍ଥାନର ସଦସ୍ୟ । ପୁଣି ଏମିତି କିଛି ସଦସ୍ୟ ଅଛନ୍ତି ଯେଉଁମାନେ କେବଳ ଗୋଟିଏ ଗୋଟିଏ ଗୋଷ୍ଠୀପ୍ରତି ଅନୁରକ୍ତ । ଆମେ ଏଠି ସାହିତ୍ୟ କରିବା ନା ରାଜନୀତି ? ସାହିତ୍ୟରେ ପୁଣି ରାଜନୀତିକରଣ ? ଉନ୍ନତି ହେବ କେମିତି ? ସମସ୍ତଙ୍କୁ ଗୋଟିଏ ସ୍ଥାନକୁ ଆଣିବାର ପ୍ରଚେଷ୍ଟା କରିବା ବି ଏଠି ଏକ ମସ୍ତବଡ଼ କାମ । ସମସ୍ତେ ଏକତ୍ରିତ ହେବେ କେମିତି ? ଯଦି ଆମ ସମସ୍ତଙ୍କର ଲକ୍ଷ୍ୟ ମାତ୍ର ଏକ, ଆମ ଭାଷାସାହିତ୍ୟର ଉନ୍ନତି ତା ହେଲେ ଏକାଠି ବସିଲେ କଣ ହେବନି ? ଗୋଟିଏ ସ୍ଥାନରେ ବସିବା, ଆମ ଲକ୍ଷ୍ୟକୁ କେମିତି ସାଧନ କରିବା ସେ ବିଷୟରେ ଚିନ୍ତା କରିବା, ଆବଶ୍ୟକ ହେଲେ ଅନ୍ୟ ସହରରେ ରହିଥିବା ସାହିତ୍ୟିକ ବନ୍ଧୁଙ୍କୁ ସ୍ୱାଗତ କରି ସମସ୍ତଙ୍କ ମତାମତକୁ ସମ୍ମାନ ଦେବା । ନା ଏହା କଣ ସମ୍ଭବ ? ଜଣେ ସାହିତ୍ୟିକ ବନ୍ଧୁକହିଲେ, "ଅମୁକ ଗୋଷ୍ଠୀରେ କେହି ସାହିତ୍ୟ କରନ୍ତି ନାହିଁ, ଖାଲି ଟଙ୍କାପଇସା ଅଛି ବୋଲି ସଂଘଟିଏ ଗଢ଼ି ଦେଇଛନ୍ତି । ଯିଏ ପଇସା ଦେଲା ସେ ପୁରସ୍କାର ପାଉଛି ।" ବନ୍ଧୁଙ୍କୁ ପଚାରିଲି, "ଭାଇ, ତୁମେ ଦେଇ ଦେଉନି । ପୁରସ୍କାରଟେ ପାଇଯିବ ।" ସେ ହସିଦେଇ କହିଲେ, "ଭାଇ ଆମର ଏତେ ପଇସା ନାହିଁ ।" ମାନେ ଯଦି ଆମ ପାଖରେ ପଇସା ଥାଆନ୍ତା ତା'ହେଲେ ଆମେ ମଧ୍ୟ ଅର୍ଥ ବିନିମୟରେ ପୁରସ୍କାର କିଣିଥାନ୍ତି । ଏହିମାନେ ସାହିତ୍ୟ କରିବେ ! ! !

ଅନେକ ସାହିତ୍ୟାନୁଷ୍ଠାନ ପ୍ରତିମାସରେ କିମ୍ବା ସପ୍ତାହରେ ଅନ୍ତତଃ ଦିନଟିଏ ପାଇଁ ସଭାଟିଏର ଆୟୋଜନ କରନ୍ତି । ବିଭିନ୍ନ ବିଷୟରେ ଚର୍ଚ୍ଚା କରନ୍ତି ଆଉ କବିତା ପାଠର ଆୟୋଜନମଧ୍ୟ କରନ୍ତି । ଏହାଦ୍ୱାରା ସମସ୍ତଙ୍କ ସମ୍ମୁଖରେ କୃତିଟିର ସମାଲୋଚନା ଓ ପ୍ରଶଂସା ମିଳିଯାଏ । ଏହାପରେ କେହି କେହି ବନ୍ଧୁ ସେହି ଲେଖାମାନଙ୍କୁ ବିଭିନ୍ନ ପତ୍ରପତ୍ରିକାକୁ ପଠାନ୍ତି ପ୍ରକାଶନ ପାଇଁ । ସମସ୍ତେ ତ ଆଉ ବହି ଛାପିପାରିବେ ନାହିଁ । ବହି ଛାପିବା ପାଇଁ ଆବଶ୍ୟକ ଅର୍ଥ ମିଳିବ କେଉଁଠୁ ? ଆଉ ଅଧିକାଂଶ ବନ୍ଧୁ ନିଜର ରଚନା ଗୁଡ଼ିକୁ ପୁରୁଣା ଡାଏରୀରେ ସାଇତି ରଖନ୍ତି । ଏହି ସବୁ ସାହିତ୍ୟ ସଭାରେ ଗୋଟିଏ କଥା ନିଶ୍ଚୟ ଦେଖାଯାଏ, ପ୍ରତ୍ୟେକ କବି ବା ଲେଖକ ନିଜ କୃତିକୁ ଆଗ ଉପସ୍ଥାପନ କରିବାକୁ ଚାହାନ୍ତି । ଏହା ଏଥିପାଇଁ ନୁହେଁ ଯେ ସେମାନେ



ନଜ କୃତକୁ ସର୍ବଶ୍ରେଷ୍ଠ ବୋଲ ବବେଚତ କରନ୍ତ, ବରଂ ଏଥିପାଇଁ ଯେ ନଜ ଲେଖାଟିକୁ ପଢ଼ିଦେଲାପରେ ଘରକୁ ଶୀଘ୍ର ଫେରଯିବେ । ଅନ୍ୟମାନେ କଣ ଲେଖୁଛନ୍ତ ନ ଲେଖୁଛନ୍ତ ସେ ବଷୟରେ ଜାଣିବାକୁ ଇଚ୍ଛା ନାହିଁ ।

ସାହତ୍ୟର ପ୍ରଗ୍ଭର ଓ ପ୍ରସାର ପ୍ରତ ଆମେ ବମୁଖ । ଏହା ଅନ୍ୟଏକ ପ୍ରମୁଖ କାରଣ । ମୋର ଜଣେ ବୟୋଜ୍ୟୋଷ୍ଠ ଭଇ ଥରେ ଗୋଟିଏ ପ୍ରମୁଖ ସାହତ୍ୟ ସଭାରେ ନଜ ଅଭଭାଷଣରେ କହୁ କହୁ କହଦେଲେ ଯେ ସାହତ୍ୟର ସ୍ଥିତ ଇଣ୍ଟରନେଟରେ ନଗଣ୍ୟ । ସେ କାଳେ ଅନେକ ପରୀକ୍ଷା ନରୀକ୍ଷା କର ଦେଖିଛନ୍ତ ଆଉ ସବୁବେଳେ ସେ ପାଇଛନ୍ତ ଯେ ସାହତ୍ୟ କାଳେ ଇଣ୍ଟରନେଟରେ ହୋଇପାରବ ନାହିଁ । ତାଙ୍କ ପାଖ ଚେୟାରରେ ବସିଥିବା ଅନ୍ୟଜଣେ ବୟୋଜ୍ୟୋଷ୍ଠ ସାହତ୍ୟକ ତାଙ୍କ ହାତ ଟାଣି କହଲେ, ଏମିତ କଥା କୁହନ୍ତୁ ନାହିଁ । ଆଜକାଲ ଫେସବୁକରେ ଅନେକ ଭଲ ଭଲ କବତା ପଢ଼ିବାକୁ ମିଳୁଛ । ସୋସିଆଲ୍ ମିଡ଼ିଆରେ ସାହତ୍ୟ ଚର୍ଚ୍ଚା ହେଲାଣି । ସୌଭଗ୍ୟବଶତଃ ସେଦନ ସେହ ସଭାରେ ମୁଁ ବସିଥିଲ । ମୋତେ କଥାଟା ବହୁତ ଖରପ ଲାଗିଲା । ମନେ ମନେ ଗଣିପକାଇଲ ଅଧୁନା କେତୋଟି ଇ-ପତ୍ରିକା ଓଡ଼ିଆ ଭାଷାରେ ପ୍ରକାଶିତ ହୋଇଛ । ବୋଧହୁଏ ଆମ ବଡ଼ଭଇ ସେ ବଷୟରେ ଜାଣିନାହାନ୍ତ କମ୍ବା ସେ ଜାଣିଥିବା ଇଣ୍ଟରନେଟ୍ ବଷୟରେ ଆମେ ଜାଣିନୁ । ଦଶବର୍ଷରୁ ଅଧିକ ସମୟ ଆହ୍ୱାନ ଇ-ପତ୍ରିକା ସଫଳତାର ସହ ପ୍ରକାଶିତ ଓ ପ୍ରଗ୍ଭର କର ଆସୁଛ ଏବଂ ଦନକୁ ଦନ ଏହାର ଲୋକପ୍ରିୟତା ବୃଦ୍ଧି ପାଇବାରେ ହିଁ ଲାଗିଛ । ଅବଶ୍ୟ ପରେ ଜଣେ ବନ୍ଧୁ କହଲେ ଯେ ବଡ଼ଭଇ କାଳେ ଇଣ୍ଟରନେଟରେ ଗୋଟିଏ ପତ୍ରିକା ପ୍ରକାଶିତ କରବା କଥା କହ ଅନେକ ସାହତ୍ୟକ ବନ୍ଧୁଙ୍କ ଠାରୁ ବେଶ୍ କଛ ଅର୍ଥ ଉପାର୍ଜନ କରଦେବାପରେ ଅସଫଳ ହୋଇ ଏହପର ମନ୍ତବ୍ୟ ଦେଇଛନ୍ତ ।

ଇଣ୍ଟରନେଟ୍ ଆଉ ସାହତ୍ୟ ଦୁଇଟି ଅଲଗା ଅଲଗା ଜନଷ କନ୍ତୁ ଚନ୍ତା କରଦେଖିଲେ ଆମେ ଜାଣିପାରବା ପରସ୍ପର ପରପୂରକ । ଇଣ୍ଟରନେଟ୍ ମାଧ୍ୟମରେ ଆମେ ସାହତ୍ୟକୁ ବଶ୍ୱବ୍ୟାପୀ ପ୍ରସାର କରପାରବା । ପତ୍ରପତ୍ରିକାର ଏକ ସୀମାଥାଏ, ସେମାନେ ନର୍ଦ୍ଦିଷ୍ଟ ଭୌଗଳକ ସୀମା ଭତରେ ହିଁ ପ୍ରସାରତ ହୋଇଥାନ୍ତ ଏବଂ ସେଗୁଡ଼ିକର ପାଠକଙ୍କ ସଂଖ୍ୟା ମଧ୍ୟ ସୀମିତ ଥାଏ, ଅପରନ୍ତୁ ଇ-ପତ୍ରିକା ପ୍ରକାଶନ ପରେ ଏହାର ପାଠକ ବଶ୍ୱର ଯେ କୌଣସି ଦେଶରୁ ବ ହୋଇପାରନ୍ତ । ସହଜରେ ନଜ ସମୟରେ ସେମାନେ ଏହାକୁ ଡାଉନଲୋଡ଼ କର ପଢ଼ିପାରନ୍ତ । ଆହ୍ୱାନ ଇ-ପତ୍ରିକାର ଲୋକପ୍ରିୟତାର ସୂତ୍ର ମଧ୍ୟ ଏଇଥିରେ ନହତ । ଆମେ ବନ୍ଦ କୋଠରୀରେ





ବସି କେତେ ସାହତ୍ୟ ଆଲୋଚନା କରଲେ ମଧ ସେ ସବୁ ଯେତେଦନ ଯାଏଁ ପାଠକଙ୍କ ଲୋକଲୋଚନରେ ଆସିନାହିଁ, ବା ଜନାଦୃତ ହୋଇନାହିଁ, ସେତେଦନ ଯାଏଁ ସେଇ ସାହତ୍ୟର ମୂଲ୍ୟ କଛନାହିଁ । ଏମିତ ଅନେକ କବ ଓ ଲେଖକ ଅଛନ୍ତ ଯେଉଁମାନେ କାଳଜୟୀ ରଚନା ଲେଖିଥାଇ ପାରନ୍ତ କନ୍ତୁ ସେ ସବୁକୁ ସେମାନେ କେବେ ବ ପ୍ରକାଶିତ କରପାରନାହାନ୍ତ । ସମୟ ଓ ସୁଯୋଗ ଥାଇ ସୁଦ୍ଧା ଆମେ ଆମ ଅଜ୍ଞାନତାବଶତଃ ବହୁତ ନୂତନ ଦଗନ୍ତ ଆବଷ୍କାର କରବାରୁ ବଞ୍ଚିତ ହେଉଛୁ । ପ୍ରତ ରବବାର ଅପରାହ୍ନରେ ସାହତ୍ୟ ସଭା ହେଉଛ, କବତା ପାଠ ହେଉଛ ଅଥଚ ସେହ କବତା ସବୁକୁ ପତ୍ରକାରେ ପ୍ରକାଶିତ କରବାପାଇଁ କେହ ଦେଉନାହାନ୍ତ, ଆଉ କେହ କେହ ବନ୍ଧୁ ସନ୍ଦେହରେ ଦେଖି ପଚାରୁଛନ୍ତ, ଭାଇ ମୁଁ ପଇସା ଦେଇ କବତା ଛାପିବା ସପକ୍ଷରେ ନାହିଁ । ହେ, ଆମ ବଡ଼ଭାଇ ପରା ଥରେ ଟଙ୍କା ନେଇ ଏଇ ଭୟ ସୃଷ୍ଟି କରଦେଇଛନ୍ତ, ସେ ଭୟ ଛାଡ଼ିଲେ ତ !!!

ପ୍ରକୃତ ସାହତ୍ୟ ସାଧକମାନଙ୍କ ଘୋର ଅଭାବ ରହଛ । ଆଉ ଯେଉଁ ମୁଷ୍ଟିମେୟ ବ୍ୟକ୍ତି ସାହତ୍ୟ ସହ ଜଡ଼ିତ ସେମାନଙ୍କ ମଧ୍ୟରୁ ସିଂହଭାଗ କେବଳ ସମ୍ମାନ ବା ପ୍ରତଷ୍ଠା ଆଶାରେ ଏହ କାମ କରୁଛନ୍ତ । ବଭନ୍ନ ସାହତ୍ୟ ସଭାକୁ ଯାଇ ସମ୍ମାନତ ହେବା ପାଇଁ ସେମାନେ ପ୍ରାଣପଣେ ଚେଷ୍ଟା କରୁଛନ୍ତ । ସାହତ୍ୟ ପତ୍ରକାଟିଏ ପ୍ରକାଶିତ କରବା ବ୍ୟକ୍ତିମଧ ଏମିତକା ମହାପୁରୁଷ ମାନଙ୍କ ଦୟାରୁ ଲକ୍ଷ୍ମୀଙ୍କ କରୁଣା ପାଉଛନ୍ତ । ସେ ଯା ହେଉ ସେ ସବୁ ଆମେ ଚର୍ଚ୍ଚା କରବା ଅନୁଚତ, କାରଣ ସେ ସବୁ ସର୍ବଜନବଦତ । ସମସ୍ତେ ଦେଖୁଛନ୍ତ ଜାଣୁଛନ୍ତ, ହେଲେ ଯାହା ଚାଲୁଛ ଚାଲୁଥାଉ ନ୍ୟାୟରେ କେହ ବଦଳାଇବାକୁ ଚେଷ୍ଟା କରୁନାହାନ୍ତ ।

ଆହ୍ୱାନ ଇ-ପତ୍ରକା ପାଇଁ ପ୍ରତ୍ୟେକ ମାସରେ କଛ କଛ ଲେଖା ଆପେ ଆପେ ପହଞ୍ଚିଯାଏ, ଆଉ କଛ ଲେଖା ବ୍ୟକ୍ତିଗତ ଅନୁରୋଧ ହେତୁ ବ ମିଳେ, କଛ ଲେଖା ଆମେ ଫେସବୁକ୍ କମ୍ବା ଅନ୍ୟ ସୋସିଆଲ୍ ମିଡ଼ିଆରୁ ନେଇ ପ୍ରକାଶିତ କରଥାଉ । କନ୍ତୁ ଯେତେବେଳେ ପୂଜା ବଶେଷାଂକ ପ୍ରକାଶନ କରବାକଥା ଚନ୍ତା କର ଏଥିପାଇଁ ଲେଖା ପଠାଇବାକୁ ଅନୁରୋଧ ଦଆଗଲା, ଅନେକେ ସେହ ଅନୁରୋଧ ପତ୍ରକୁ ସୌଜନ୍ୟମୂଳକ ଭାବରେ ଫେସବୁକରେ ଲାଇକ୍ ମାରଦେଇ ଚୁପ୍ ବସିଗଲେ । ବାରମ୍ବାର ଅନୁରୋଧପରେ କଛ ଅଧିକ ଲେଖା ମିଳଲା । ତଥାପି ଯେଉଁ ମାତ୍ରାରେ ଲେଖା ମିଳବ ବୋଲ ଆଶା ଥିଲା ତାହା ମିଳଲା ନାହିଁ । ଏଥିପାଇଁ ଇଣ୍ଟରନେଟ୍ ବଷୟରେ ଅଜ୍ଞାନତା ଏକ ମୁଖ୍ୟ କାରଣ । ମୁଁ ଲକ୍ଷ୍ୟ କରଛ ଅନେକ ସାହତ୍ୟକ ବନ୍ଧୁ ଇମେଲ୍ ଓ



ଇଣ୍ଟରନେଟ୍ ବିଷୟରେ କିଛି ଜାଣନ୍ତି ନାହିଁ । ତେଣୁ ସେମାନେ ଏହି ପତ୍ରିକାକୁ କୌଣସି ଲେଖା ଦେବାକୁ ଇଚ୍ଛା ଦେଖାନ୍ତି ନାହିଁ । ଯୁଗ ସହ ତାଳ ଦେଇ ଆମକୁ ବି ଉନ୍ନତ କରିବାକୁ ପଡ଼ିବ, ଯେତେବେଳେ ବିଶ୍ୱ ସାହିତ୍ୟ ଜଗତ ଇଣ୍ଟରନେଟ୍ ମାଧ୍ୟମରେ ନୂଆ ନୂଆ ଦିଗନ୍ତ ସୃଷ୍ଟି କରୁଛି ଆମକୁ ମଧ୍ୟ ସେହିପରି କରିବାକୁ ପଡ଼ିବ । ସାହିତ୍ୟ ସଭାର ବନ୍ଦ କୋଠରୀରୁ ବାହାରି ବସୁଦୈବକୁଟୁମ୍ବକମ୍ ରେ ବିଶ୍ୱାସ କରୁଥିବା ବିଶ୍ୱ ଓଡ଼ିଆଙ୍କ ଜନମାନସକୁ ଆନ୍ଦୋଳିତ କରିବାକୁ ପଡ଼ିବ, ତେବେ ଯାଇ ଆମ ଭାଷା ଓ ଆମ ସାହିତ୍ୟ ଉନ୍ନତି କରିବ ।

ଅନେକ ବନ୍ଧୁଙ୍କୁ ବାରମ୍ବାର ଫୋନ୍ କରିବା ଏବଂ ଇମେଲ୍ ଏବଂ ହ୍ୱାଟ୍ସଆପ୍ କରିବାକୁ ମଧ୍ୟ ପଡ଼ିଛି । ତଥାପି ଅନେକ ବନ୍ଧୁ ସ୍ୱତଃସ୍ଫୂର୍ତ୍ତଭାବେ ଲେଖା ଦେଇଛନ୍ତି ଯାହା ଏକ ଆନନ୍ଦର ବିଷୟ । କିଛି ବନ୍ଧୁ ଅବଶ୍ୟ ଦେଇନାହାନ୍ତି, ସେଥିମଧ୍ୟରୁ କିଛି ବନ୍ଧୁ ଚାହୁଁଥିଲେ ମୁଁ ସେମାନଙ୍କୁ ବିଶେଷ ଭାବରେ ଅନୁରୋଧ କରିଥାନ୍ତି ଏବଂ ସେ ଲେଖା ଦେଇଥାନ୍ତେ । ଯେ ହେତୁ ଅନ୍ୟକୁ ଖୋସାମଦ କରିବା ଆମ ପତ୍ରିକାର ମୂଳଲକ୍ଷ୍ୟ ନୁହେଁ ତେଣୁ ଯେଉଁ ବନ୍ଧୁମାନଙ୍କର ଲେଖା ଏଠାରେ ପ୍ରକାଶିତ ହୋଇପାରିନାହିଁ, ସେମାନେ ଏବେ ଜାଣି ଯାଇଥିବେ କାହିଁକି ସେମାନଙ୍କ ଲେଖା ପ୍ରକାଶିତ ହୋଇନାହିଁ । ସାହିତ୍ୟ ଓ ଭାଷା ପାଇଁ ଆପଣ ସ୍ୱେଚ୍ଛାରେ ଯଦି ସହଯୋଗ କରିବାକୁ ଚାହାନ୍ତି ଆମେ ଆନନ୍ଦିତ ହେବୁ, କିନ୍ତୁ ଆମେ ଖୋସାମଦ କରିପାରିବୁ ନାହିଁ । କାରଣ ଏହି ପତ୍ରିକା କୌଣସି ବ୍ୟକ୍ତି ବା ସଂସ୍ଥାର ଦୟାରେ ଚଳେନାହିଁ । ସମୁଦାୟ ଆହ୍ୱାନ ଓଡ଼ିଆ ପରିବାରର ସଦସ୍ୟଙ୍କ ସ୍ନେହ, ସଦିଚ୍ଛା ଏବଂ ସହଯୋଗରେ ଏହା ଦଶବର୍ଷରୁ ଉର୍ଦ୍ଧ୍ୱ ସମୟ ହେଲା ଚାଲିଛି ଆଉ ଆଶା କରୁଛି ଆଗାମୀ ଅନେକ ଦଶନ୍ଧୀଧରି ଏମିତି ଚାଲିଥିବ ମଧ୍ୟ ।

ଶାରଦୀୟ ପୂଜା ଓ ପାର୍ବଣର ସମୟରେ ଆହ୍ୱାନର ଏହି ବିଶେଷ ଉପସ୍ଥାପନା ଆପଣ ମାନଙ୍କୁ ଆମୋଦିତ କରିବ ବୋଲି ଆଶା କରୁଛି । ଯେଉଁ ବନ୍ଧୁମାନେ ପ୍ରଥମଥର ଏହି ପତ୍ରିକାପାଇଁ ଲେଖା ଦେଇଛନ୍ତି ସେମାନଙ୍କୁ ସମସ୍ତଙ୍କୁ ଆମେ ହାର୍ଦ୍ଦିକ ଧନ୍ୟବାଦ ଜଣାଉଛୁ । ଆଶା କରୁଛୁ ଆପଣମାନେ ଆଗାମୀ ସଂସ୍କରଣ ମାନଙ୍କ ପାଇଁ ମଧ୍ୟ ଏକାପରି ଉତ୍ସାହ ଦେଖାଇବେ ଏବଂ ସହାୟତା କରିବେ ।

*ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ*

ସମ୍ପାଦକ, ଆହ୍ୱାନ ଇ-ପତ୍ରିକା



# ସୂଚୀପତ୍ର







**ପବିତ୍ର ଦଶହରା ପୂଜା ଉପଲକ୍ଷେ**

**ସମସ୍ତଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ।**



# ନବରାତ୍ରୀରେ ନବଦୁର୍ଗା



ପ୍ରତିଭା ପ୍ରିୟଦର୍ଶିନୀ

ଅନ୍ୟାନ୍ୟ ଦେଶ ଓ ଧର୍ମରେ ପରମ ସ୍ରଷ୍ଟାଙ୍କୁ ପୁରୁଷ ଭାବେ କଳ୍ପନା କରାଯାଏ, ମାତ୍ର ଭାରତରେ ଓ ସନାତନ ହିନ୍ଦୁଧର୍ମରେ ସକଳ ସୃଷ୍ଟିର ଏକକ ଶକ୍ତିଙ୍କୁ ମା ଆଦ୍ୟାଶକ୍ତି ରୂପରେ ମାନ୍ୟତା ଦିଆଯାଏ । ସୃଜନର ସମସ୍ତ ଶକ୍ତି ଏବଂ ପ୍ରକୃତିକୁ ମାତା ରୂପରେ ପୂଜା କରାଯାଏ । ଶକ୍ତି ଆରାଧନାର ପରମ୍ପରା ପ୍ରାକ୍ ଐତିହାସିକ କାଳରୁ ପ୍ରଚଳିତ, ଯେତେବେଳେ ବେଦ ଗୁଡ଼ିକର ଅଭ୍ୟୁଦୟ ମଧ୍ୟ ହୋଇନଥିଲା । ଋକ୍‌ବେଦର ଦଶମ ମଣ୍ଡଳରେ ଏକ ସମ୍ପୂର୍ଣ୍ଣ ପରିଚ୍ଛେଦ ଶକ୍ତି ପୂଜା ଓ ଆରାଧନା ବିଷୟରେ ଉଲ୍ଲେଖ ରହିଛି । ଋକ୍‌ବେଦର 'ଦେବୀ ଶୁକ୍ତ' ଓ 'ଉଷା ଶୁକ୍ତ' ତଥା ସାମ୍‌ବେଦର 'ରାତ୍ରି ଶୁକ୍ତ' ଶକ୍ତି ଉପାସନା ଲାଗି ସମର୍ପିତ । ସ୍ୱୟଂ ବ୍ରହ୍ମା ମାର୍କଣ୍ଡେୟ ପୁରାଣରେ ଋଷି ମାର୍କଣ୍ଡେୟଙ୍କୁ ମା ଦୁର୍ଗାଙ୍କ ନଅଟି ବିଭିନ୍ନ ରୂପ ଅର୍ଥାତ 'ନବଦୁର୍ଗା'ଙ୍କ ବିଷୟରେ ବିଷଦ ବ୍ୟାଖ୍ୟା କରିଛନ୍ତି । ଶିବ ପୁରାଣର 'ରୁଦ୍ର ସଂହିତା'ର ପଞ୍ଚମ ଅଧ୍ୟାୟରେ ମଧ୍ୟ ଦେବୀ ଦୁର୍ଗାଙ୍କ ବିଭିନ୍ନ ରୂପ ବିଷୟରେ ବିସ୍ତୃତ ବର୍ଣ୍ଣନା ରହିଛି । ଦେବୀ ଆରାଧନାର ମୂଖ୍ୟ ପର୍ବ ହେଉଛି 'ନବରାତ୍ରୀ' । ବର୍ଷରେ ଚାରିଥର ନବରାତ୍ର ପାଳନ କରାଯାଏ । ଚୈତ୍ର, ଆଷାଢ଼, ଆଶ୍ୱିନ ଓ ମାଘ ମାସରେ । ଚୈତ୍ର ଓ ଆଶ୍ୱିନ ନବରାତ୍ର ଅଧିକାଂଶ ପାଳନ କରନ୍ତି । ଆଷାଢ଼ ଓ ମାଘ ନବରାତ୍ରୀକୁ ଗୁପ୍ତ ନବରାତ୍ର କୁହାଯାଏ ଏବଂ ଏହା ଦଶମହାବିଦ୍ୟାଙ୍କୁ ସମର୍ପିତ । ପୁରାଣ ବର୍ଣ୍ଣନାନୁସାରେ ମା ଆଦ୍ୟାଶକ୍ତିଙ୍କ ଠାରୁ ପ୍ରଥମେ ମହାଲକ୍ଷ୍ମୀ, ମହାକାଳୀ ଓ ମହାସରସ୍ୱତୀ ସୃଷ୍ଟି ହେଲେ । ପରେ ଏହି ତିନି ମହାଦେବୀଙ୍କ ଠାରୁ ଆଉ ତିନୋଟି ଲେଖାଏଁ ଅଂଶ ଜାତ ହେଲେ ଯାହାଙ୍କୁ ନବଦୁର୍ଗା ବୋଲି କୁହାଯାଏ ଏବଂ ନବରାତ୍ରୀରେ ଏହି ନଅ ରୂପଙ୍କ ଆରାଧନା କରାଯାଏ । 'ଦେବୀ ମାହାତ୍ମ୍ୟ, ଦେବୀ କବଚମ୍'ରେ ବ୍ରହ୍ମା ନବଦୁର୍ଗାଙ୍କ ନାମ ବର୍ଣ୍ଣନା କରି ଲେଖିଛନ୍ତି,





ପ୍ରଥମଂ ଶୈଳପୁତ୍ରୀତ ଦ୍ୱତୀୟଂ ବ୍ରହ୍ମଗ୍ଚରଣୀ

ତୃତୀୟଂ ଚନ୍ଦ୍ରଘଣ୍ଟେତ କୁଷ୍ମାଣ୍ଡେତ ଚତୁର୍ଥକମ୍

ପଞ୍ଚମଂ ସ୍କନ୍ଦମାତେତ ଷଷ୍ଠଂ କାତ୍ୟାୟନୀ ତଥା

ସପ୍ତମଂ କାଳରତ୍ରୀଷ୍ଟ ମହାଗୌରୀତ ଗ୍ଷ୍ଟମମ୍

ନବମଂ ସିଦ୍ଧିଦାତ୍ରୀଚ ନବଦୁର୍ଗା ପ୍ରକର୍ତୀତାଃ

ଉକ୍ତାନ୍ତେତାନ ନାମାନ ବ୍ରହ୍ମଣୈବ ମହାତ୍ମନା

ଦେବୀଙ୍କ ପ୍ରତ୍ୟେକ ରୂପଙ୍କ ଭନ୍ନ ଭନ୍ନ ରୂପ, ଆୟୁଧ, ବାହାନ, ମନ୍ତ୍ର ତଥା ନର୍ଦ୍ଦଷ୍ଟ ଗ୍ରହ ଉପରେ ପ୍ରଭାବ ରହଛି । ସେହ ନବରୂପ ବଷୟରେ ଏଠାରେ ଆଲୋଚନା କରବା ।

(୧) - ଶୈଳପୁତ୍ରୀ



ଦକ୍ଷଯଜ୍ଞରେ ଆହୁତ ଦେଇ ଦେବୀ ସତୀଙ୍କ ପ୍ରୟାଣ ପରେ, ପୁନଶ୍ଚ ସେ ଶୈଳରଜ ହମାଳୟଙ୍କ କନ୍ୟା ରୂପେ ଜନ୍ମ ହୋଇଥିବା କୁହାଯାଏ । ତେଣୁ ଦେବୀଙ୍କ ଏହ ରୂପକୁ ହେମାବତୀ ଓ ଶୈଳପୁତ୍ରୀ ବୋଲ କୁହାଯାଏ । ନବରାତ୍ରୀର ପ୍ରଥମ ଦନ ମା ଶୈଳପୁତ୍ରୀଙ୍କୁ ପୂଜା କରାଯାଏ । ଗ୍ରହମାନଙ୍କ ମଧ୍ୟରେ ଚନ୍ଦ୍ର ତାଙ୍କ ଦ୍ୱାର ପ୍ରଭାବତ ବୋଲ ମାନ୍ୟତା ରହଛି । ସହସ୍ର ସୂର୍ଯ୍ୟର ତେଜ ଧାରଣୀ ମା, ସମସ୍ତ ମହାଜାଗତକ ଶକ୍ତିର ପ୍ରତମା ଓ ଅଭୟ ବରଦାୟିନୀ । ଦେବୀ ଦ୍ୱଭୂଜା । ଦକ୍ଷିଣ ହସ୍ତରେ ତ୍ରୀଶୂଳ ଏବଂ ବାମହସ୍ତରେ ପଦ୍ମପୁଷ୍ପ ଧାରଣ କରନ୍ତ । ମସ୍ତକରେ ଅର୍ଦ୍ଧଚନ୍ଦ୍ର ଶୋଭପାଏ । ବୃଷଭ ବାହାନ ଯୋଗୁଁ ତାଙ୍କୁ ବୃଷାରୂଢ଼ା ବୋଲ ମଧ କୁହାଯାଏ । ଚନ୍ଦ୍ର ତାଙ୍କ ଦ୍ୱାର ପ୍ରଭାବତ ହେଉଥିବାରୁ ମା ଶୈଳପୁତ୍ରୀ ସାଧକମାନଙ୍କ ଚନ୍ଦ୍ରଦଶା ଖଣ୍ଡନ କରନ୍ତ ।

ମନ୍ତ୍ର:-

ବନ୍ଦେ ବାଞ୍ଛିତ ଲାଭାୟ ଚନ୍ଦ୍ରାର୍ଦ୍ଧକୃତ ଶେଖରାଂ





ବୃଷାରୂଢା ଶୂଲଧରାଂ ଶୈଳପୁତ୍ରୀ ଯଶସ୍ୱିନୀ

(୨) - ବ୍ରହ୍ମଚାରିଣୀ



ନବରାତ୍ରୀର ଦ୍ୱିତୀୟଦିନ ମା ବ୍ରହ୍ମଚାରିଣୀଙ୍କ ଆରାଧନା କରାଯାଏ । ମଙ୍ଗଳ ଗ୍ରହ ମା ବ୍ରହ୍ମଚାରିଣୀଙ୍କ ନିୟନ୍ତ୍ରଣାଧୀନ ବୋଲି ବିଶ୍ୱାସ ରହିଛି । ମା ନଗ୍ନ ପାଦରେ ବିଚରଣ କରୁଥିବା ରୂପରେ ପୂଜା ପାଆନ୍ତି । ଦେବୀ ଦ୍ୱିଭୁଜା । ଦକ୍ଷିଣ ହସ୍ତରେ ଜପମାଳା ଓ ବାମହସ୍ତରେ କମଣ୍ଡଳୁ ଶୋଭାପାଏ । ମହାଦେବଙ୍କୁ ପତି ରୂପରେ ପାଇବା ପାଇଁ ଦେବୀ ପାର୍ବତୀ କଠିନ ତପସ୍ୟା କରିଥିଲେ । ତାଙ୍କର ସେହି ରୂପକୁ ହିଁ ବ୍ରହ୍ମଚାରିଣୀ ଭାବେ ବିବେଚନା କରାଯାଏ । ପୁରାଣ ମାନଙ୍କରେ ବର୍ଣ୍ଣନା ରହିଛି ଯେ ସେ ୧୦୦୦ ବର୍ଷ କେବଳ ଫଳ, ପୁଷ୍ପ ଆହାର କରି ସାଧନା କରାଥିଲେ । ଆଉ କେତେକ ପୁରାଣ ଅନୁସାରେ ସେ ୩୦୦୦ ବର୍ଷ କେବଳ ବିଲ୍ୱପତ୍ର ଗ୍ରହଣ କରି ତପସ୍ୟା କରିଥିଲେ ଏବଂ ପରେ ତାହା ମଧ୍ୟ ତ୍ୟାଗ କରିଦେବାରୁ ତାଙ୍କୁ ଅପର୍ଣ୍ଣା ବୋଲି କୁହାଗଲା । ମା ଜ୍ଞାନ ଓ ବୁଦ୍ଧିର ଭଣ୍ଡାର । ଭକ୍ତକୁ ସୁଖ, ଶାନ୍ତି, ଯଶ, କୀର୍ତ୍ତି ପ୍ରଦାନ କରନ୍ତି ଏବଂ ମୋକ୍ଷର ମାର୍ଗ ପ୍ରଶସ୍ତ କରନ୍ତି ।

ମନ୍ତ୍ର:-

ଦଧାନା କର ପଦ୍ମାଭ୍ୟାଂ ଅକ୍ଷମାଲା କମଣ୍ଡଳୁ

ଦେବୀ ପ୍ରସିଦତୁମୈ ବ୍ରହ୍ମଚାରିଣ୍ୟାନୁତମା

(୩)- ଚନ୍ଦ୍ରଘଣ୍ଟା



ଦେବୀ ପାର୍ବତୀଙ୍କ ବିବାହିତ ରୂପ ହେଉଛନ୍ତି ମା ଚନ୍ଦ୍ରଘଣ୍ଟା । ବିବାହ ପରେ ତାଙ୍କ କପାଳରେ ଘଣ୍ଟା ଭଳି ଦିଶୁଥିବା ଅର୍ଦ୍ଧଚନ୍ଦ୍ର ସଜାଉଥିବାରୁ ଏପରି ନାମ ପଡିଛି । ନବରାତ୍ରର ତୃତୀୟ ଦିନ ମା ଚନ୍ଦ୍ରଘଣ୍ଟା ଙ୍କ ପୂଜା କରାଯାଏ । ସେ ଶୁକ୍ର ଗ୍ରହକୁ ନିୟନ୍ତ୍ରଣ କରନ୍ତି । ଏକ ବ୍ୟାଘ୍ରୀ ତାଙ୍କ ବାହାନ । ଦେବୀ ତ୍ରିନେତ୍ରା ଓ ଦଶଭୂଜା ଏବଂ ସୁବର୍ଣ୍ଣ

ବର୍ଣ୍ଣା । ବାମପଟ ଗ୍ଟରେଟି ହସ୍ତରେ ତ୍ରିଶୁଳ, ଗଦା, ଖଡ୍ଗ ଓ କମଣ୍ଡଳୁ ଧାରଣ କରନ୍ତି ତଥା ପଞ୍ଚମ ହସ୍ତ ବରଦ ମୁଦ୍ରାରେ ଥାଏ । ଦକ୍ଷିଣପଟ ଗ୍ଟରେଟି ହସ୍ତରେ ପଦ୍ମପୁଷ୍ପ, ଧନୁ, ତୀର ଓ ଜପମାଳା ଧାରଣ କରନ୍ତି ତଥା ପଞ୍ଚମ ହସ୍ତ ଅଭୟ ମୁଦ୍ରାରେ ଶୋଭାପାଏ । ମା ଙ୍କ ଏହରୂପ ସମସ୍ତ ଶପୁଦମନ କର ଭକ୍ତକୁ ଶକ୍ତି ପ୍ରଦାନ କରନ୍ତି । ବଶ୍ୱାସ କରଯାଏଯେ ମା ଙ୍କ ମସ୍ତକରେ ଶୋଭାପାଉଥିବା ଚନ୍ଦ୍ରଘଣ୍ଟାର ଶବ୍ଦ ସମସ୍ତ ଭୂତ, ପ୍ରେତ ଓ ଦୁରତ୍ମା ମାନଙ୍କୁ ଦୂର କରଦଅନ୍ତି ।

ମନ୍ତ୍ର:-

ପିଣ୍ଡଜ ପ୍ରବରରୂଢା ଚଣ୍ଡ କୋପାସ୍ତ୍ର କୈର୍ୟୁତାଂ

ପ୍ରସାଦଂ ତନୁତେ ମହ୍ୟଂ ଚନ୍ଦ୍ରଘଣ୍ଟେଷ୍ ତ ବଶ୍ରୁତାଂ

(୪)- କୁଷ୍ମାଣ୍ଡା



କୁଷ୍ମାଣ୍ଡା ନାମକୁ ବ୍ୟାଖ୍ୟା କରବାକୁ ଯାଇ ଏଭଳ ସରଳକୃତ କରଯାଏ, କୁ+ଷ୍ମ+ଅଣ୍ଡ ବା କୁଅଣ୍ଡା ଅର୍ଥାତ ମହାଜାଗତକ ଅଣ୍ଡା । କାରଣ ବଶ୍ୱାସ କରଯାଏ ଯେ ସମଗ୍ର ବ୍ରହ୍ମାଣ୍ଡ ତାଙ୍କଠାରୁ ସୃଷ୍ଟି ହୋଇଛି । ତାଙ୍କ ସ୍ମିତହାସ୍ୟ ର କରଣ ଯେଉଁଠି ବଚ୍ଛୁରତ ହେଲ ସେଠି ସୃଷ୍ଟିର ପ୍ରାରମ୍ଭ ହେଲ । ସେ ସୂର୍ଯ୍ୟଙ୍କ କେନ୍ଦ୍ରରେ ଅବସ୍ଥାନ କର ତାଙ୍କୁ ସମସ୍ତ ଶକ୍ତି ପ୍ରଦାନ କରନ୍ତି, ତେଣୁ ଗ୍ରହରଜ ସୂର୍ଯ୍ୟ ତାଙ୍କ ଦ୍ୱାର ନୟନ୍ତ୍ରତ ବୋଲ ବଗ୍ଟର କରଯାଏ । ଦେବୀ ବ୍ୟାଘ୍ର ବାହନୀ ଓ ଅଷ୍ଟଭୂଜା । ଦକ୍ଷିଣ ଗ୍ଟର ହସ୍ତରେ କମଣ୍ଡଳୁ, ଧନୁ, ତୀର ଏବଂ ପଦ୍ମ ଧାରଣ କରନ୍ତି ତଥା ବାମ ଗ୍ଟର ହସ୍ତରେ ଅମୃତକଳସ, ଜପମାଳା, ଗଦା ଓ ଚକ୍ର ଧାରଣ କରନ୍ତି । ବଶ୍ୱାସ କରଯାଏ ଯେ ସମସ୍ତ ସିଦ୍ଧି ଓ ନଧି ପ୍ରଦାନକାରୀ ଶକ୍ତି ତାଙ୍କ ଜପମାଳାରେ ନହତ ଅଛି । ତାଙ୍କୁ କୁଷ୍ମାଣ୍ଡ ଫଳ (ଲଉ) ବଳ ଦଆଯାଏ । ନବରତ୍ରର ଚତୁର୍ଥ



ଦନ ମା କୁଷ୍ମାଣ୍ଡା ଙ୍କ ଆରାଧନା କରାଯାଏ ।

ମନ୍ତ୍ର:-

ସୁର ସମ୍ପୂର୍ଣ୍ଣ କଳସଂ ରୁଧିରପ୍ଲୁତ ମେବଚ

ଦଧାନା ହସ୍ତ ପଦ୍ମାଭ୍ୟାଂ କୁଷ୍ମାଣ୍ଡା ଶୁଭଦାସ୍ତୁମେ

(୫)-ସ୍କନ୍ଦମାତା



ଭଗବାନ କାର୍ତ୍ତିକେୟ ବା ସ୍କନ୍ଦଙ୍କ ମାତା ହେବାପରେ ଦେବୀ ପାର୍ବତୀଙ୍କୁ ସ୍କନ୍ଦମାତା ବୋଲ କୁହାଗଲ । ନବରାତ୍ରର ପଞ୍ଚମ ଦନ ମା ସ୍କନ୍ଦମାତା ଙ୍କ ଆରାଧନା କରାଯାଏ । ବଶ୍ୱାସ କରାଯାଏ ଯେ, ମା ବୁଧ ଗ୍ରହକୁ ନୟନ୍ତ୍ରଣ କରନ୍ତ । ଦେବୀ ସିଂହାରୂଢା । କୋଳରେ ଶିଶୁ ମୁରୁଗନ (କାର୍ତ୍ତିକେୟ/ସ୍କନ୍ଦ) ଙ୍କୁ ଧାରଣ କରନ୍ତ । ଦେବୀ ଶୁଭ୍ର ବର୍ଣ୍ଣା, ତ୍ରନେତ୍ରା ଓ ଚତୁର୍ଭୁଜା । ଉପର ଦୁଇ ହାତରେ କମଳ ଶୋଭପାଏ । ଅନ୍ୟ ଦୁଇ ହାତରୁ ଗୋଟିଏ ଅଭୟ ମୁଦ୍ରାରେ ଏବଂ ଅନ୍ୟଟିରେ ଶିଶୁ ସ୍କନ୍ଦଙ୍କୁ ଧରଥାନ୍ତ । ମା ପଦ୍ମ ଉପରେ ଆସୀନ ହୁଅନ୍ତ ବୋଲ ତାଙ୍କୁ ପଦ୍ମାସନା ମଧ କୁହାଯାଏ । ମା ଙ୍କ କୃପା ପ୍ରାପ୍ତ ହୋଇ ନପଟ ମୂର୍ଖ ବ ଜ୍ଞାନର ସାଗର ଲାଭ କରପାରେ ବୋଲ ବଶ୍ୱାସ ରହଛ ।

ମନ୍ତ୍ର:-

ସିଂହାସନାଗତା ନତ୍ୟଂ ପଦ୍ମାଶ୍ରିତ କରଦ୍ୱୟା

ଶୁଭଦାସ୍ତୁ ସଦାଦେବୀ ସ୍କନ୍ଦମାତା ଯଶସ୍ୱିନୀ

(୬)-କାତ୍ୟାୟନୀ



ମହଷାସୁର କୁ ଦମନ କରବା ପାଇଁ ଦେବୀ କାତ୍ୟାୟନୀ ରୂପ ଧାରଣ କରଥିଲେ । ମା ଙ୍କ ଏହ ରୂପକୁ ନବରାତ୍ରର ଷଷ୍ଠଦନ ପୂଜା କରାଯାଏ । ଏହା ଦେବୀଙ୍କ ସର୍ବାପେକ୍ଷା ଅଶାନ୍ତ ଓ ଉଗ୍ର ରୂପ ଅଟେ । ବୃହସ୍ପତ ଗ୍ରହକୁ ମା ନୟନ୍ତ୍ରଣ କରନ୍ତ ବୋଲ ବଶ୍ୱାସ



ରହିଛ । ଦେବୀ ସିଂହରୂଢା ଓ ଚତୁର୍ଭୂଜା ବାମ ଦୁଇ ହସ୍ତରେ ଖଡ୍ଗ ଓ ପଦ୍ମ ଧାରଣ କରନ୍ତି । ଦକ୍ଷିଣ ଦୁଇହସ୍ତ ଅଭୟ ଓ ବରଦ ମୁଦ୍ରାରେ ଥାଆନ୍ତି । ମହର୍ଷି କାତଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ମା ତାଙ୍କ କନ୍ୟା ରୂପରେ ଜନ୍ମ ହୋଇଥିବାରୁ ତାଙ୍କ ନାମ କାତ୍ୟାୟନୀ ଅଟେ ।

ମନ୍ତ୍ର:-

ଚନ୍ଦ୍ରହାସୋ ଜ୍ୱଲକର୍ ଶାର୍ଦ୍ଦୁଳ ବରବାହନା

କାତ୍ୟାୟନୀ ଶୁଭଂ ଦଦ୍ୟାତ୍ ଦେବୀ ଦାନବ ଧାତନୀ

(୭)- କାଳରାତ୍ରୀ



ଶୁମ୍ଭ ନିଶୁମ୍ଭ ଙ୍କୁ ନିପାତ କରିବା ପାଇଁ ମା ନିଜର ବାହ୍ୟ ସ୍ୱର୍ଣ୍ଣାଭ ତ୍ୱଗ୍ୱ ତ୍ୟାଗ କରି ଗାଢ କୃଷ୍ଣ ବର୍ଣ୍ଣ ଧାରଣ କରିଥିଲେ । ସେହି ରୂପଙ୍କୁ କାଳରାତ୍ରୀ କୁହାଯାଏ ଏବଂ ନବରାତ୍ରିର ସପ୍ତମ ଦିନ ତାଙ୍କୁ ପୂଜା କରାଯାଏ । ଏହା ଦେବୀଙ୍କର ସବୁଠୁ ଭୟଙ୍କର ରୂପ । ଶନି ଗ୍ରହ ମା କାଳରାତ୍ରୀଙ୍କ ନିୟନ୍ତ୍ରଣରେ । ମା ଙ୍କ ରଙ୍ଗ ସମ୍ପୂର୍ଣ୍ଣ କଳା ଏବଂ ବାହାନ ସେଉଛି ଗଧ । ଦେବୀ ଚତୁର୍ଭୂଜା । ଦୁଇ ଦକ୍ଷିଣହସ୍ତ ଅଭୟ ଓ ବରଦ ମୁଦ୍ରାରେ ଶୋଭପାଏ ତଥା ଦୁଇ ବାମହସ୍ତରେ ଖଡ୍ଗ ଓ ଅଙ୍କୁଶ ଧାରଣ କରନ୍ତି । ମା ଙ୍କ ରୂପ ଭୟଙ୍କର ହେଲେମଧ ସେ ଅଭୟ ବରଦାୟିନୀ । ଶୁଭଫଳ ପ୍ରଦାନ କରନ୍ତି ବୋଲି ତାଙ୍କୁ ଶୁଭଙ୍କରୀ ମଧ କୁହାଯାଏ । ମା ଅଜ୍ଞାନ ଅନ୍ଧକାର ଦୂରକାରିଣୀ ।

ମନ୍ତ୍ର:-

ଏକବେଣୀ ଜପାକର୍ଣ୍ଣପୁରଲଗ୍ନା ଧରସ୍ଥିତା

ଲମ୍ବୋଷ୍ଠୀ କର୍ଣ୍ଣିକା କର୍ଣ୍ଣୀ ତୈଳାଭ୍ୟକ୍ତ ଶରୀରିଣୀ

ବାମପାଦୋ ଲସୌଲଃ ଲତା କଣ୍ଟକ ଭୂଷଣା

ବର୍ଦ୍ଧନ ମୂର୍ଦ୍ଧ ଧ୍ୱଜା କୃଷ୍ଣା କାଳରାତ୍ରୀର୍ଭୟଙ୍କରୀ

(୮)- ମହାଗୌରୀ

ବର୍ଣ୍ଣିତ ଅଛିଯେ ୧୬ ବର୍ଷ ବୟସ ବେଳକୁ ପ୍ରତିକୂଳ ପରିବେଶରେ କଠିନ ତପସ୍ୟା କରି







ଦେବୀଙ୍କ ରଙ୍ଗ ମଳିନ ପଡିଯାଇଥିଲା । ପ୍ରସନ୍ନ ହେବାପରେ ମହାଦେବ ଗଙ୍ଗାଜଳ ଢାଳି ତାଙ୍କୁ ପରିଷ୍କୃତ କରିବାରେ ଅତ୍ୟନ୍ତ ଶୁଭ୍ରକାନ୍ତି ଓ ସୌନ୍ଦର୍ଯ୍ୟମୟୀ ରୂପ ଆବିର୍ଭୂତ ହୋଇଥିଲେ । ମା ଙ୍କ ଏହି ରୂପ ସଂସାର ର ସବୁଠୁଁ ଅଧିକ ଗୌରବର୍ଣ୍ଣା ହୋଇଥିବାରୁ ତାଙ୍କୁ ମହାଗୌରୀ କୁହାଗଲା । ଅଷ୍ଟମ ଦିନ ମା ମହାଗୌରୀଙ୍କ ଆରାଧନା କରାଯାଏ । ସେ ରାହୁ ଗ୍ରହକୁ ନିୟନ୍ତ୍ରଣ କରନ୍ତି । ଶୈଳପୁତ୍ରୀ ଙ୍କ ଭଳି ମହାଗୌରୀ ମଧ୍ୟ ବୃଷାରୂଢା । ଦେବୀ ଚତୁର୍ଭୂଜା । ଦକ୍ଷିଣ ଦୁଇ ହସ୍ତରୁ ଗୋଟିକରେ ତ୍ରିଶୂଳ ଓ ଅନ୍ୟଟି ଅଭୟ ମୁଦ୍ରାରେ ଶୋଭାପାଏ । ବାମପଟ ଏକହସ୍ତ ଡମ୍ବରୁ ଧାରଣ କରନ୍ତି ଓ ଅନ୍ୟଟି ବରଦ ମୁଦ୍ରାରେ ଥାଏ । ଅତ୍ୟନ୍ତ ଗୌର ବର୍ଣ୍ଣ ଲାଗି ତାଙ୍କୁ ଶଙ୍ଖ, ଚନ୍ଦ୍ର ଓ କୁନ୍ଦପୁଷ୍ପ ସହିତ ତୁଳନା କରାଯାଏ । ଦେବୀ ଶ୍ୱେତବସ୍ତ୍ର ପରିହିତା, ତେଣୁ ତାଙ୍କୁ ଶ୍ୱେତାମ୍ବରଧରା ମଧ୍ୟ କୁହାଯାଏ । ମା ଶାନ୍ତି ଓ ସୌହାର୍ଦ୍ଦ ପ୍ରଦାନ କରନ୍ତି ।

ମନ୍ତ୍ର:-

ଶ୍ୱେତେ ବୃଷେ ସମାରୂଢା ଶ୍ୱେତାମ୍ବରଧରା ଶୁଚୀ

ମହାଗୌରୀ ଶୁଭଂ ଦଦ୍ୟାତ୍ ମହାଦେବ ପ୍ରମୋଦଦା

(୯)- ସିଦ୍ଧିଦାତ୍ରୀ



ବ୍ରହ୍ମାଣ୍ଡର ଅୟମାରମ୍ଭ ସମୟରେ ସୃଷ୍ଟି ସର୍ଜନା ପାଇଁ ଭଗବାନ ରୁଦ୍ର ଆଦି ପରାଶକ୍ତିଙ୍କୁ ଆବାହନ କରିଥିଲେ । ଆଦି ପରାଶକ୍ତି ନିର୍ଗୁଣ ନିରାକାର, ତେଣୁ ସେ ମହାରୁଦ୍ରଙ୍କ ବାମଭାଗରୁ ସାକାର ରୂପରେ ସିଦ୍ଧିଦାତ୍ରୀ ଭାବରେ ଆବିର୍ଭୂତା ହେଲେ । ନବରାତ୍ରର ଅନ୍ତିମ ଅର୍ଥାତ ନବମ ଦିନ ମା ସିଦ୍ଧିଦାତ୍ରୀଙ୍କୁ ପୂଜା କରାଯାଏ । ମା କେତୁ ଗ୍ରହକୁ ନିୟନ୍ତ୍ରଣ କରନ୍ତି । ମା କମଳାସନା ଓ ସିଂହବାହିନୀ । ଦେବୀ ଚତୁର୍ଭୂଜା । ଦକ୍ଷିଣ ଦୁଇ ହସ୍ତରେ ଗଦା





ଏବଂ ଚକ୍ର ଓ ବାମ ଦୁଇ ହସ୍ତରେ ଶଙ୍ଖ ଏବଂ ପଦ୍ମପୁଷ୍ପ ଧାରଣ କରନ୍ତି । ମା ଙ୍କୁ କେବଳ ମାନବ ନୁହନ୍ତି ବରଂ ଦେବତା, ଗନ୍ଧର୍ବ, ଯକ୍ଷ ଏବଂ ସିଦ୍ଧ, ସମସ୍ତେ ପୂଜା କରନ୍ତି । "ଦେବୀ ପୁରାଣ' ରେ ବର୍ଣ୍ଣିତ ଅଛିଯେ ସ୍ୱୟଂ ମହାଦେବ ମଧ୍ୟ ତାଙ୍କର ସମସ୍ତ ସିଦ୍ଧି ମହାଶକ୍ତିଙ୍କୁ ଆରାଧନା କରି ପାଇଥିଲେ । ମା ତାଙ୍କ ଭକ୍ତଙ୍କୁ ଅଷ୍ଟ ସିଦ୍ଧି (ଅନିମା, ମହିମା, ଗରିମା, ଲଘିମା, ପ୍ରାପ୍ତି, ପ୍ରକାମ୍ୟ, ଈଶୀତ୍ୱ ଓ ବଶିତ୍ୱ) ପ୍ରଦାନ କରନ୍ତି । ବାମଭାଗରୁ ମା ସିଦ୍ଧିଦାତ୍ରୀଙ୍କ ଆବିର୍ଭାବ ପରେ ମହାରୁଦ୍ରଙ୍କୁ ଅର୍ଦ୍ଧନାରୀଶ୍ୱର ରୂପରେ ପୂଜା କରାଗଲା ।

ମନ୍ତ୍ରଃ-

ସିଦ୍ଧ ଗନ୍ଧର୍ବଯକ୍ଷାଦ୍ୟୈ ରସୁରୈ ରମରୈ ରପି

ସେବ୍ୟମାନା ସଦା ଭୂୟାତ୍ ସିଦ୍ଧିଦା ସିଦ୍ଧି ଦାୟିନୀ

ଏହି ନବରାତ୍ରି ମା ନବଦୁର୍ଗା ସମସ୍ତ ସଂସାରବାସୀଙ୍କୁ ଦୟା ଓ କରୁଣା କରି ଶୁଭାଶୀର୍ବାଦ ପ୍ରଦାନ କରିବା ହୁଅନ୍ତୁ ।





# ଅସ୍ମିତା



ପ୍ରତଭା ପ୍ରିୟଦର୍ଶିନୀ

ଢେର ଦନ ପରେ
ଆଜ ଯେବେ ଖୋଜଲ
ନଜ ଭତରେ "ମୁଁ" କୁ
କେବଳ "ତୁମେ" ହିଁ "ତୁମେ" ମିଳଲ
"ମୁଁ" ତ ନଥିଲ କେଉଁଠି ! ! !
ହେଲେ ସେ "ତୁମେ" ବ ତ ମୋ'ର ନଥିଲ.....

ତୁମକୁ ଦେଖିଲ,
ଯେବେ ମୋ ଅଶ୍ରୁରେ
ଲୁଚେଇଲ ନଜକୁ ନର୍ଘାତ ବର୍ଷାରେ,
କେବେ ସାଓ୍ୱାର ତଳେ,
ପୁଣି କେବେ ତକଆ କୋଳରେ,
କାଳେ ତୁମେ ଧରା ପଡ଼ିଯିବ
ଅନ୍ୟମାନଙ୍କ ପ୍ରଶ୍ନିଳ ଦୃଷ୍ଟିରେ.....

ମୁଁ ସମର୍ପି ଦେଇଚ
ମୋ ଅସ୍ମିତା
ମୋ ଅସ୍ତିତ୍ୱ
ସମଗ୍ର "ମୁଁ" କୁ
ତୁମପାଖେ ସମ୍ପୂର୍ଣ୍ଣ ଭବରେ ।
ଜାଣେନ କେବେ ମିଳବକ ନା





ତୁମର ସ୍ୱୀକୃତ ! !.....

ଏବେବ ତୁମପାଇଁ

"ମୁଁ" ଗୋଟେ ଅବାଞ୍ଛିତ ଉପହାର,

ସଢୁଛ ଫାଟକ ବାହାର

ଟିଣ ଚଟି ବାକ୍ସଟାରେ

ଖାଉଛ ଧୂଳ

ସହୁଛ ପ୍ରକୃତର ପ୍ରଭାବ ।

ତଥାପି ଅପେକ୍ଷା,

ଏକ ଅନ୍ତହୀନ ଅପେକ୍ଷା,

କେଜାଣି କେତେ ଜନ୍ମର,

ଥରଟେ କେବଳ ଶୁଣିବ ବୋଲ,

ତୁମେବ "ତୁମ" ଭିତରେ

ଏତେଟିକେ ମୋ "ମୁଁ" କୁ

ଜଡ଼ାଇ ରଖିଛ ବୋଲ.....

http://www.cnslounge.com/writer/pratibha-priyadarshini/



# ସୁନା ପଞ୍ଜୁରୀ



ବିନୟ ମହାପାତ୍ର

ମନକୁ ବୁଝାଇ ଦେଲି,
ଏ ପଞ୍ଜୁରି ତୋ ପାଇଁ ସବୁଠାରୁ
ଭଲ ନିରାପଦ ।
ଏଠି ନାହିଁ ବାହାରର ହେମାଳ ପବନ
ଅବା ବୈଶାଖର ଦେହ ଜଳା ଖରା ।
ନା ଅଛି ଆଷାଢ଼ର ବଜ୍ର ବିଜୁଳି ଅବା
ଶ୍ରାବଣର ଅବିରତ ବର୍ଷାର ଧାରା ।
ଏଠି କେବଳ ଶାନ୍ତି ଆଉ ଶାନ୍ତି,
ନିରାପଦର ଅଭୟ ଗୁହ୍ନୁଆ ।

ମନ ମୋର ବୁଝି ଗଲା
ସୁନା ପିଲାଟିଏ ପରି,
ପଞ୍ଜୁରି ଭିତରେ ଥାଇ
ବିନା ମାଗେ ଦାନା ଖାଇବାର
ମଜା ଜାଣିଲାଣି ।
ବସି ଖାଇ ଶୋଇ ଦିନ କଟିଯାଏ ।
ହେଲେ ତଥାପି ପାରୁନି ଭୁଲି,
ବାହାରର ସେଇ
ବିଶାଳ ନୀଳଆକାଶ,
ସୂର୍ଯ୍ୟର ନିର୍ମଳ ପ୍ରକାଶ,
ଶସ୍ୟ ଶ୍ୟାମଳା ବିସ୍ତୀର୍ଣ୍ଣ ପ୍ରାନ୍ତର ।

ଉଡ଼ି ଯିବାକୁ ମନ ଗୁହେଁ,
ସୁନାର ପଞ୍ଜୁରି ଛାଡ଼ି,
ମାପିବାକୁ ଏ ଆକାଶର ଏ ପାରରୁ
ଶେଷ ଦିଗବଳୟ ପର୍ଯ୍ୟନ୍ତ ।
ହେଲେ ବୃଥା ଏ କଳ୍ପନା
ପାଦରେ ଯେ ରୁପାର
ଶିକୁଳି ଲାଗିଛି ।





# ବର୍ଷାଗୋ' ଏ କଣ ଦେଇ ଗଲ



ବିନୟ ମହାପାତ୍ର

ବର୍ଷା ଗୋ ତୁମେ ଆସିଲ ପୁଣି ଚାଲିଗଲ,
ଆଉ ଥରଟିଏ ପଛକୁ ଫେରିକି ଚାହିଁଲନି ।
କଣ ଦେଇଗଲ ଦେଖିଲନି,
କଣ ନେଇଗଲ ତା'ର ହିସାବ ଦେଲନି ।
ବର୍ଷା ଗୋ, ତୁମେ ତ ମୋ କଳ୍ପନାର
ଅଲଅଳ ଅନୁଢ଼ା କିଶୋରୀଟିଏ
ନରମ ପାଦରେ ଚାଲେ,
କେବେ ପୁଣି ରିମ୍ ଝିମ୍
ଛମ୍ ଛମ୍ ନାଚିଯାଏ,
ପାଦର ପାଉଁଜି ବାଜେ,
ମେଘ ମହ୍ଲାର ଗାଇ ଆଉଁଷି ଦିଏ,
ଦରଜଳା ରୁକ୍ଷ ଧରିତ୍ରୀକୁ,
ଭିଜେଇ ଦିଏ ଏ ଧରିତଳ,
ନୂତନ ଜୀବନକୁ ଆମନ୍ତ୍ରଣ କରେ ।
କେବେ ବିରହୀ ପ୍ରେମିକ ମନରେ
କାମନାର ନିଆଁ ଜାଳି ଦିଏ ।
ହେଲେ ଇଏ କି ଉଗ୍ର ରୂପ ତୁମ ?
ତୁମେ ଆସିଲ,
ବଜ୍ର ବିଜୁଳିର ଫଉଜ ନେଇ,
ପ୍ରଳୟର ତାଣ୍ଡବ ନାଚ ନାଚି,
ଲକ୍ଷେ ହୃଦୟର ଆଶାର ଦୀପାଳି ଲିଭାଇ
ତୁମେ କି ପାରୁଛ ଦେଖି ଜଳ ପ୍ଳାବନ ବନ୍ୟାର ବିଭୀଷିକାମାନ
ତୁମେ କି ପାରୁଛ ଶୁଣି
କ୍ଷୁଧାତୁର ଶିଶୁର ବିକଳ କ୍ରନ୍ଦନ

ତମର ରେଶମୀ ପଣତ ଛାଇ
ଏବେ ବି ଆକାଶେ ଢାଙ୍କିଛି
ଟପ୍ ଟପ୍ ଯାହା ଝରି ଯାଏ
ତୁମ ବାଦଲରୁ ନୁହେଁ,
ଏ ଜଳ ଲକ୍ଷ ହୃଦୟୁ ଝରେ ।

ନୂଆ ଦିଲ୍ଲୀ





# ଅହିଂସା



ପ୍ରବୋଧ ଚନ୍ଦ୍ର ମୁଦ୍ରା

(ଅହିଂସା ପରମୋ ଧର୍ମଃ)

ବଚତ୍ରମୟ ଏ ଜଗତ ତାର ସୃଷ୍ଟି ବସ୍ମୟ
ସକଳ ବଧାନ ତାହାର ପୁଣି ଆଶ୍ଚର୍ଯ୍ୟମୟ ।୧।
ସଜୀବ, ନିର୍ଜୀବ ସରବେ ସୃଷ୍ଟି ନିୟମେ ବନ୍ଧା
ବଧି ବ୍ୟବସ୍ଥାକୁ କିଏ ବା ଦେଇପାରବ ବାଧା ।୨।
ସୃଷ୍ଟି ଓ ପ୍ରଳୟ, ଜନମ - ମୃତ୍ୟୁ, ଦବା ଓ ରାତ
ପାପ - ପୁଣ୍ୟ, ହିଂସା - ଅହିଂସା ଆଦ ଅଦ୍ଭୁତ ନୀତ ।୩।
ଶ୍ରେଷ୍ଠ ନୀତ ଅଟେ 'ଅହିଂସା' ସଂସାରର ଆଦର୍ଶ
ଏହାକୁ କରଣ ପାଥେୟ ବ୍ୟକ୍ତି ଲଭେ ସୁଯଶ ।୪।
'ଅହିଂସା' ନୀତର ମହତ୍ତ୍ୱ ସାରା ବଶ୍ୱ ବଦତ
ବ୍ୟକ୍ତି ହୋଇ ଅନୁପ୍ରାଣିତ ହୁଏ ମାନବ ଶ୍ରେଷ୍ଠ ।୫।
'ଅହିଂସା' ସମାନ ସୁଗୁଣ ନାହିଁ ଏ ଅବନୀରେ
ମାନବରୁ ହୁଏ ମହାତ୍ମା ବରଳ କୃତତ୍ୱରେ ।୬।
ଅହିଂସାର ମାର୍ଗ ଦର୍ଶକ ଥିଲେ ପ୍ରଭୁ ଶ୍ରୀରାମ
ଜୀବେ ଦୟା ବହ ପ୍ରଜାଙ୍କୁ ପାଳୁଥିଲେ ଉତ୍ତମ ।୭।
ହିଂସା ନ କରବ ପ୍ରାଣୀଙ୍କୁ ଏହା ବେଦ ବଚନ
ଶାସ୍ତ୍ର ଓ ପୁରାଣ ତତ୍ତ୍ୱକୁ କରଅଛ ପ୍ରମାଣ ।୮।
ସତ୍ୟ - ଦୟା - କ୍ଷମା - ଅହିଂସା ଅଟେ ମାନବ ଧର୍ମ
ମନୁଷ୍ୟ ଜୀବନ ସଫଳ ହୁଏ କଲେ ସୁକର୍ମ ।୯।
ମହାତ୍ମା ଗୌତମ ଥିଲେ ତ କରୁଣାର ସାଗର
ଅହିଂସା ପରମ ଧର୍ମକୁ କରୁଥିଲେ ଆଦର ।୧୦।





ସତ୍ୟାଗ୍ରହ କଲେ ବାପୁଜୀ ଅହଂସାର ନୀତରେ

ଦେଶକୁ ସ୍ୱାଧୀନ କରଲେ ଦୃଢ ପ୍ରତଜ୍ଞା ବଳେ । ୧୧।

ସଂସାରର ମହାମାନବ ହୋଇ ଅହଂସା ବ୍ରତୀ

ସୁମହତ କାର୍ଯ୍ୟ କରଣ ସର୍ବେ ହେଲେ ସୁଖ୍ୟାତ ।୧୨।

ପ୍ରତହଂସା ଅଟେ ଜନକ ବଶ୍ୱ ଉଗ୍ରବାଦର

ଧର୍ମଯୁଦ୍ଧ ନାମେ ଆତଙ୍କ ବଶ୍ୱ ହୁଏ ଅସ୍ଥିର ।୧୩।

ମାନବରୁ ସୃଷ୍ଟି ଦାନବ ହଂସା ଆଚରଣରେ

ଅହଂସାରୁ ଶାନ୍ତ ପ୍ରତଷ୍ଠା ହୁଏ ସାର୍ ବଶ୍ୱରେ ।୧୪।

ଯେଉଁ ଦେଶେ ନାହିଁ ଅହଂସା ସେଠି ମୈତ୍ରୀ ଅଭାବ

ହଂସାରୁ ବଢଇ ଶତ୍ରୁତା ନ ଜନ୍ମେ ସଦଭାବ ।୧୫।

ଆତଙ୍କବାଦ ଓ ନକ୍ସଲବାଦ ହଂସାରୁ ସୃଷ୍ଟି

ବଶ୍ୱରେ ଖେଳାଏ ଆତଙ୍କ ନାହିଁ ମନରେ ଶାନ୍ତ ।୧୬।

ହଂସା ଅପସର ଅହଂସା ଭାବ ହେଉ ପ୍ରତଷ୍ଠା

ମାନବ ମନରେ କଦାପି ନ ରହୁ କୁତ୍ସିତ ଚନ୍ତା ।୧୭।

ହଂସା ଭାବ ହେଉ ବଲୀନ ଏହ ଧରାଧାମରୁ

ଅହଂସାର ହେଉ ବଜୟ ଏହ କାମନା କରୁ ।୧୮।

।। ସମାପ୍ତ ।।

ସାଙ୍କୁଡ଼ା, ଗଞ୍ଜାମ

ଓଡ଼ିଶା

ଇମେଲ୍ - prabodhamudra@gmail.com



# ଶରଦାବାହନ



ପ୍ରବୋଧଚନ୍ଦ୍ର ମୁଦ୍ରା

ବିଧି ଆଜ୍ଞା ମତେ ଅବନୀ ବକ୍ଷରେ ଲୀଳା କରଇ ପ୍ରକୃତି ।
ବାରମାସ ସହ ଷଡଋତୁ ମିଶି ସ୍ୱଧର୍ମ ସର୍ବେ ପାଳନ୍ତି ।୧ ।
ଧାରା ଶ୍ରାବଣରେ ସିକ୍ତ ଧରଣୀ ଶ୍ୟାମଳ ରଙ୍ଗେ ରଞ୍ଜିତା ।
ସୁଷମା ମଣ୍ଡିତା ପ୍ରକୃତି ସାମ୍ରାଜ୍ଞୀ ତା' ଶୋଭା ବିଶ୍ୱ ମୋହିତା ।୨ ।
ବିଦାୟୀ ଶ୍ରାବଣ ବର୍ଷାରାଣୀ ସହ ମହୀରୁ କରେ ଗମନ ।
ଶ୍ରାବଣର ଅନ୍ତେ ଭାଦ୍ର-ଆଶ୍ୱିନ କରନ୍ତି ଧରାବତରଣ ।୩ ।
ସମ୍ମିଳିତ ଭାବେ କରନ୍ତି ଉଭୟେ ଶରତର ଆବାହନ ।
ସୁସ୍ୱାଗତ ହୋଇ ଶରତ ଧରାରେ ଜ୍ଞାପଇ ଅଭିନନ୍ଦନ ।୪ ।
ସୁବିମଳ ଜ୍ୟୋତି ପ୍ରକାଶି ପୃଥ୍ୱୀକୁ କରିଥାଇ ସୁନିର୍ମଳ ।
ସ୍ୱର୍ଗୁ ଅବତରି ଶାନ୍ତିଦୂତଟିଏ ଦିଶଇ ଯେହ୍ନେ ଧବଳ ।୫ ।
ବିବିଧ ପୁଷ୍ପରେ ତରୁ-ଲତା ଗଣ ହୋଇଥାନ୍ତି ସୁସଜ୍ଜିତ ।
ସରସି ରାଜୀବ ହୋଇ ବିକଶିତ କରେ ମନ ପ୍ରଫୁଲ୍ଲିତ ।୬ ।
ମକରନ୍ଦ ପାନ ଆଶାରେ ମଧୁପେ କରନ୍ତି ମଧୁ ଗୁଞ୍ଜନ ।
ପ୍ରତି ସୁମନରେ ଭ୍ରମନ୍ତି ଭ୍ରମରେ ସର୍ବେ ହୋଇ ଏକ ପ୍ରାଣ ।୭ ।
ଯୂଇ - ଜାଇ - ଜବା - ଟଗର - ତମାଳ - ବଣମଲ୍ଲୀ - କନିଅର ।
କୁନ୍ଦ ଓ ତରାଟ ହୋଇ ପ୍ରସ୍ଫୁଟିତ ଦିଅନ୍ତି ଶାନ୍ତି ଅପାର ।୮ ।
ଶରତ କାଳୀନ ଚନ୍ଦ୍ରମା ଆଲୋକ ଅତି ଆହ୍ଲାଦଦାୟକ ।
ସୁଶୀତଳ କରି ଅଶାନ୍ତ ପ୍ରାଣରେ ଦିଏ ନବୀନ ପୁଲକ ।୯ ।
ଶାରଦୀୟ ଶୁକ୍ଳପକ୍ଷ ଯାମିନୀର ଜ୍ୟୋସ୍ନାବିଧୌତ ସୁକାନ୍ତି ।
ଉଲ୍ଲସିତ ପ୍ରାଣେ କିଶୋର–କିଶୋରୀ ନୃତ୍ୟରଙ୍ଗେ ମଜ୍ଜିଥାନ୍ତି ।୧୦ ।
ସବୁଜିମା କ୍ଷେତ୍ର ଲାଗଇ ବିଚିତ୍ର ଭବ୍ୟ ଅନୁପମ ଦୃଶ୍ୟ ।
ସର୍ବ ମନ-ପ୍ରାଣ ହୁଅଇ ପ୍ରଶାନ୍ତି ବିଶ୍ୱ ଲାଗେ ମଧୁମୟ ।୧୧ ।
ନଦୀପଠା-ଗିରିପାଦ ଓ ପ୍ରାନ୍ତର ଦିଶେ ତୁଷାର ଧବଳ ।
କାଶତଣ୍ଡି ଫୁଲେ ହୋଇ ସୁସଜ୍ଜିତ ମହୀ ଶୋହେ ସୁମଞ୍ଜୁଳ ।୧୨ ।





ଶାରଦୀୟ ଧରା ଚତ୍ତ ମନୋହରା ଯେସନେ ଅଳକାପୁରୀ ।
ଇନ୍ଦ୍ରାଣୀ ଦେବୀଙ୍କୁ ନନ୍ଦଇ ଏ ଶୋଭା ସତେକ ମୋହନୀନାରୀ ।୧୩ ।
ମୃଦୁ ସୁବାସରେ ଶେଫାଳ କୁସୁମ ନଶାରେ ହୋଇ ପୁଷ୍ପିତ ।
ବ୍ରାହ୍ମମୁହୂର୍ତ୍ତରେ ହୁଏ ଧରାଶାୟୀ  ବୃକ୍ଷରୁ ହୋଇ ପତତ ।୧୪ ।
ମର୍ତ୍ତ୍ୟଭୁବନର ସୌନ୍ଦର୍ଯ୍ୟେ ଆକୃଷ୍ଟ ଦ୍ୟୁଲୋକର ସର୍ବେ ସୁର ।
ଅମରପୁରରୁ  ଅବତର  ମୋହେ ଇହେ କରନ୍ତ ବହାର ।୧୫ ।
ହୁଳହୁଳ ଦେଇ ଗ୍ରାମ କୁମାରୀଏ ଗାଇ ଜହ୍ନଓଷା ଗୀତ ।
ଶ୍ରଦ୍ଧା–ଭକତରେ କରଥାନ୍ତ ପୂଜା ହୋଇ ସର୍ବେ ଆନନ୍ଦିତ ।୧୬ ।
ଜହ୍ନ ଓ କାକୁଡି ପୁଷ୍ପେ ସୁମଣ୍ଡନ ହୋଇଥାନ୍ତ ବୃନ୍ଦାବତୀ ।
ଚଉରମୂଳରେ ପ୍ରଦୋଷେ ପୂଜନ୍ତ କରଣ ସନ୍ଧ୍ୟାଆଳତ ।୧୭ ।
ଆଶ୍ୱିନର ଆଦ୍ୟ କୃଷ୍ଣପକ୍ଷ ଠାରୁ ପାଳତ ଅପରପକ୍ଷ ।
ପିତୃଗଣ ସର୍ବେ ପିଣ୍ଡ ପ୍ରାପ୍ତି ଆଶେ ବଚରନ୍ତ ଧରାବକ୍ଷ ।୧୮ ।
ଅମାବାସ୍ୟାତଥି ମହାଳୟା ଦନ ତଳ ତର୍ପଣ ପ୍ରଦାନ ।
ଶ୍ରଦ୍ଧା- ବଶ୍ୱାସରେ ପିଣ୍ଡଦାନ ସହ କରନ୍ତ ପିତୃସ୍ମରଣ ।୧୯ ।
ଶ୍ରୀଗଣପତ ଓ ଦେବଶିଳ୍ପୀଙ୍କର ହୁଅଇ ପୂଜା ଉତ୍ସବ ।
ଶିଳ୍ପ ପ୍ରତଷ୍ଠାନ ଓ ଶିକ୍ଷାନୁଷ୍ଠାନ ହୃଦେ ଚନ୍ତ ଭକ୍ତି ଭାବ ।୨୦ ।
ଶାରଦୀୟ ପର୍ବେ ଶାରଦା-ବରଦା ଦୁର୍ଗାଦେବୀ ଆବର୍ଭୁତା ।
ପାର୍ବଣର ଏହ ପାବନାବସରେ ମାତା ହୁଅନ୍ତ ପୂଜତା ।୨୧ ।
ଦୁର୍ଗାଦେବୀଙ୍କର ମୃଣ୍ମୟ ମୂର୍ତ୍ତୀକୁ ମଣ୍ଡପେ କର ସ୍ଥାପନ ।
ବୈଦକ ମନ୍ତ୍ରରେ ଆବାହନ ସହ କରନ୍ତ ଭକ୍ତି ପୂଜନ ।୨୨ ।
ଭ୍ରାତୃତ୍ୱ ବନ୍ଧନେ ଆବଦ୍ଧ ହୋଇଣ ସକଳ ମାନବ ଜାତ ।
ଶତ ଶରଦରଆୟୁଷେ ବଞ୍ଚନ୍ତ ମନେ ରଖି ଭାବ-ପ୍ରୀତ ।୨୩ ।
ଶରଦ ଆକାଶ ସୁନର୍ମଳ ପର ସର୍ବେ ହୁଅନ୍ତ ନର୍ମଳ ।
ହଂସା-କପଟ ଯାଉ ଅପସର ରହୁ ପ୍ରେମ ଅନାବଳ ।୨୪ ।
ସୁଧୀ ସାହତ୍ୟକ ଗୁଣୀ କବବର୍ଗ ସଭଙ୍କୁ ଭକ୍ତି ନମନ ।
ଶରଚ୍ଚନ୍ଦ୍ରରେ ହୋଇ ଉଦ୍ଭାସିତ ଜଣାଏ ଶୁଭାଭନନ୍ଦନ ।୨୫ ।



# ବସୁଧୈବ କୁଟୁମ୍ବକମ୍



ପ୍ରବୋଧଚନ୍ଦ୍ର ମୁଦ୍ରା

ପୂତ ଆର୍ଯ୍ୟାବର୍ତ୍ତ ବିଶ୍ୱେ ସୁବିଦିତ;
ଭାରତ ନାମରେ ଖ୍ୟାତ ।
ଜ୍ଞାନଗୁରୁ ରୂପେ ହୋଇ ସମାଦୃତ,
ଜଗତେ ଚିର ବନ୍ଦିତ ।୧ ।
ନୀତି ଓ ଆଦର୍ଶେ ବିଶ୍ୱ ସମୂହକୁ,
କରିଅଛି ଆପଣାର ।
ଶ୍ରଦ୍ଧା ଓ ବିଶ୍ୱାସ, ଭ୍ରାତୃତ୍ୱ ବନ୍ଧନେ
ବିଶ୍ୱରେ ହୋଇଛି ସାର ।୨ ।
ପୁରୁବଂଶ ରାଜା ଦୁଷ୍ୟନ୍ତଙ୍କ ପୁତ୍ର
ଅଟଇ ନାମ ଭରତ ।
ଭରତଙ୍କ ନାମେ ନାମିତ ଏ ଦେଶ,
ଏହି ମୋ ପ୍ରିୟ ଭାରତ ।୩ ।
ସକଳ ଜ୍ଞାନର ମହାର୍ଣ୍ଣବ ଏହା
ସର୍ବଶାସ୍ତ୍ରେ ପରିପୂର୍ଣ୍ଣ ।
ଯୋଗୀ, ଋଷି, ମୁନି, ମହାକବି ଆଦି
ସର୍ବେ ତାହାର ସନ୍ତାନ ।୪ ।
ଭୌଗୋଳିକ ସ୍ଥିତି ଅତୀବ ଉତ୍କୃଷ୍ଟ
ପ୍ରକୃତି ବିଭା ମଣ୍ଡିତ ।
ନାତି-ଶୀତ-ଉଷ୍ଣ ଅଟେ ଜଳବାୟୁ
ସଭିଙ୍କୁ କରେ ଆକୃଷ୍ଟ ।୫ ।
କିରୀଟ ସଦୃଶ ମଣ୍ଡିତ ମସ୍ତକ





ହମଗିର ଶୋଭବନ ।
ମହାସିନ୍ଧୁ ଯେହ୍ନେ ପଦସରୋଜକୁ
କରୁଥାଏ ପ୍ରକ୍ଷାଳନ ।୬ ।
ଭରତର ପ୍ରାଚୀ ଦଶେ ଅବସ୍ଥିତ
ଶ୍ରୀ କ୍ଷେତ୍ର ବୈକୁଣ୍ଠଧାମ ।
ପ୍ରତୀଚୀ ସୌରଷ୍ଟ୍ରେ ସୋମନାଥ ପୁଣି
ଦ୍ୱାରକାନାଥଙ୍କ ଧାମ ।୭ ।
ଉତ୍ତରଖଣ୍ଡର ବଦ୍ର ଓ କେଦାର
ନଗରଜ ହମାଳୟ ।
ଜାଗ୍ରତ ପ୍ରହରୀ ରୂପେ ଦଣ୍ଡାୟିତ
ଦେଇ ସଭଙ୍କୁ ଅଭୟ ।୮ ।
ତରୁପତ – ରମେଶ୍ୱର  ମହାଦେବ
ଦକ୍ଷିଣେ କନ୍ୟାକୁମାରୀ ।
ଏ ଆର୍ଯ୍ୟ ଭୂମିର ଶ୍ରେଷ୍ଠ ପରଚୟ
ଏ ସର୍ବେ ଗୌରବ ଶିରୀ ।୯ ।
କାଶ୍ମୀର ଅଟଇ ଭରତ ଭୂଃସ୍ୱର୍ଗ
ଦେବଭୂମି ହମାଳୟ ।
ବୈଦକ ଜ୍ଞାନରେ ହୋଇ ସମୁଜ୍ଜ୍ୱଳ
ସ୍ଥାପି ଶ୍ରେଷ୍ଠ ପରଚୟ ।୧୦ ।
ଲୋକମାତା ରୂପେ ହୋଇ ସୁପୂଜତା
ପାବନୀ ନଦୀ ସକଳ ।
ରଷ୍ଟ୍ର ପ୍ରଗତରେ ହୋଇଣ ସହାୟ
ଦଅନ୍ତ ଅମୃତ ଜଳ ।୧୧ ।
ଗଙ୍ଗା - ଗୋଦାବରୀ ଓ କୃଷ୍ଣା - କାବେରୀ
ବ୍ରହ୍ମପୁତ୍ର ମହାନଦୀ ।

ଜୀବଜଗତର କଲ୍ୟାଣ ନିମନ୍ତେ

ଦୟାଭାବ ବହି ହୃଦ ।୧୨ ।

ମହର୍ଷି ବାଲ୍ମୀକି ରଚି ରାମାୟଣ

ହୋଇଲେ ବିଶ୍ୱ ବିଖ୍ୟାତ ।

ବ୍ୟାସଦେବ ମୁନି ରଖିଲେ ସୁଯଶ

ରଚିଣ ମହାଭାରତ ।୧୩ ।

ବିକ୍ରମାଦିତ୍ୟଙ୍କ ରାଜ ପରିଷଦେ

ଥିଲେ ଜ୍ଞାନୀ ନବରତ୍ନ ।

ମହାଗ୍ରନ୍ଥ ସହ ନୀତି ଓ ଆଦର୍ଶ

ଦେଲେ ଉପଦେଶ ଜ୍ଞାନ ।୧୪ ।

କାଳିଦାସ - ମାଘ - ଦଣ୍ଡୀ - ଭବଭୂତି

ଶ୍ରୀହର୍ଷ ଆଦି ପଣ୍ଡିତ ।

ସ୍ୱକୀୟ ଜ୍ଞାନରେ ବିଶ୍ୱ ସମୂହକୁ

କରିଥିଲେ ଉଦ୍ଭାସିତ ।୧୫ ।

ଶ୍ରୀରାମ ଓ କୃଷ୍ଣ - ବୁଦ୍ଧଦେବ ଗୁରୁ

ଗୋବିନ୍ଦ ଓ ଆକବର ।

ବିଶ୍ୱ ପ୍ରାଣୀଙ୍କର ମଙ୍ଗଳ ବିଧାନ

କରୁଥିଲେ ନିରନ୍ତର ।୧୬ ।

ଗୋସ୍ୱାମୀ ତୁଳସୀ ଦାସ ଓ କବୀର

ନାନକ ଓ ସୁର ଦାସ ।

ଦୋହା - ଚୌପାଇରେ ସୁଧାମୟ ବାଣୀ

ଲେଖିଲେ ଗ୍ରନ୍ଥ ମାନସ ।୧୭ ।

ଚାଣକ୍ୟ - ବିଦୁର - ମନୁ - ଭର୍ତ୍ତୃହରି

ପତଞ୍ଜଳି ଓ ପାଣିନି ।

ନୀତି ଓ ବୈରାଗ୍ୟ - ଧର୍ମଶାସ୍ତ୍ର ଆଦି





ଯୋଗ - ବ୍ୟାକରଣ ପୁଣି ।୧୮ ।

ବଶ୍ୱନାଥଙ୍କର ସାହତ୍ୟ ଦର୍ପଣ

ଶ୍ରୀ ଜୟ ଗୀତଗୋବନ୍ଦ ।

ଭଞ୍ଜ - ରାଧାନାଥ - ଗଙ୍ଗାଧରଙ୍କର

କୃତ ଯେ ବଶ୍ୱ ବଖ୍ୟାତ ।୧୯ ।

ଶାନ୍ତ - ମୈତ୍ରୀ - ସ୍ନେହ - ସଦ୍ଭାବର ବାର୍ତ୍ତା

ବଶ୍ୱେ କର ପ୍ରତଷ୍ଠିତ ।

ସାରା ବସୁଧାକୁ ଏକତା ସୂତ୍ରରେ

ବାନ୍ଧିଛ ଦେଶ ଭାରତ ।୨୦ ।

ବଶ୍ୱଧର୍ମ ସମ୍ମିଳନୀ ଚକାଗୋରେ

ସ୍ୱାମୀଜ ବବେକାନନ୍ଦ ।

ଶ୍ରେଷ୍ଠ ବାଗ୍ମୀ ରୂପେ ବକ୍ତବ୍ୟ ରଖିଣ

କଲେ ସଭଙ୍କୁ ଚକତ ।୨୧ ।

"ବସୁଧୈବ କୁଟୁମ୍ବକମ୍" ବଷୟରେ

ଦେଇ ଦବ୍ୟ ସମ୍ଭାଷଣ ।

ବଶ୍ୱର ଶ୍ରେଷ୍ଠ ମାନବ ରୂପରେ

ହୋଇଲେ ଗୁରୁ ମହାନ ।୨୨ ।

ସତ୍ୟ - ଅହଂସାର ମହାନ ପୂଜକ

ଥିଲେ ଜାତର ଜନକ ।

ସତ୍ୟାଗ୍ରହ କର ଅହଂସା ନୀତରେ

ଦେଶକୁ କରଲେ ମୁକ୍ତ ।୨୩ ।

ସେବା - ମମତାର ପ୍ରତମୂର୍ତ୍ତୀ ସାଜ

ପୂଜ୍ୟା ମଦର ଟେରେସା ।

ସେବା ଜୀବନର ଶ୍ରେଷ୍ଠ ବ୍ରତ କର

ବଶ୍ୱେ ଲଭଲେ ପ୍ରଶଂସା ।୨୪ ।



ମୃତ୍ୟୁ ପରବର୍ତ୍ତୀ ଅଷ୍ଟାଦଶ ବର୍ଷେ
ପାଇଲେ ସନ୍ଥ ମାନ୍ୟତା ।
ଅମର ଆତ୍ମାର ଶ୍ରେଷ୍ଠ ମହୀୟସୀ
ସେବା ବଳେ ହେଲେ ଖ୍ୟାତା ।୨୫ ।
ବଶ୍ୱକବ ରୂପେ ରବୀନ୍ଦ୍ର ଠାକୁର
ରଚଲେ ଅମର ଗ୍ରନ୍ଥ ।
ବଶ୍ୱ ସମୂହର କର ଗୁଣ ଗାନ
ହୋଇଲେ ଚର ବଖ୍ୟାତ ।୨୬ ।
ଭାରତ ଅଟଇ ଗଣତନ୍ତ୍ର ରାଷ୍ଟ୍ର
ସାର୍ବଭୌମତ୍ୱର ପ୍ରତୀକ ।
ଧର୍ମନରପେକ୍ଷ ଓ ଜନମଙ୍ଗଳ
ବଶ୍ୱର ଶ୍ରେଷ୍ଠ ଦ୍ୟୋତକ ।୨୭ ।
ଜାତ - ଧର୍ମ - ସମ୍ପ୍ରଦାୟ ନର୍ବିଶେଷେ
ଭନ୍ନତା ମଧ୍ୟେ ଏକତା ।
ସର୍ବଧର୍ମ ସମନ୍ୱୟର ମିଳନ
ହୋଇଛ ଏଠି ପ୍ରତଷ୍ଠା ।୨୮ ।
ଦୟା ଓ ଉଦାର - ମହତପଣରେ
ସଭଙ୍କୁ କର ଆପଣା ।
ଜଗତେ ବରଳ ଏତାଦୃଶ ରାଷ୍ଟ୍ର
ହୋଇଛ ସେ ଉଚ୍ଚମନା ।୨୯ ।
ଶତ୍ରୁ - ମିତ୍ରଙ୍କର ଏକତ୍ରାବସ୍ଥାନ
ଶରଣାର୍ଥୀଙ୍କ ରକ୍ଷକ ।
ନାହିଁ ଏହ ଦେଶେ ଭେଦାଭେଦ ଭାବ
ଅଟନ୍ତ ସର୍ବେ ନର୍ଭୀକ ।୩୦ ।
ଯାହା ନାହିଁ ଏହ ଭାରତ ବର୍ଷରେ





ତାହା ନାହିଁ ଏ ଜଗତେ ।

ଜ୍ଞାନ ବିଜ୍ଞାନର ଅମୃତଧାରାକୁ

ବିତରୁଛ ଶୁଦ୍ଧ ଚିତ୍ତେ ।୩୧ ।

ଯାବତଚନ୍ଦ୍ରାର୍କେ ଭାରତ ବିଶ୍ୱରେ

ଆଣିଦେବ ସମ୍ଭାବନା ।

ସାରା ବସୁଧାର ହିତୈଷୀ ଭାବରେ

କରୁଛି ଶୁଭକାମନା ।୩୨ ।

ଦେବଦୂତ ସମ ଶାନ୍ତିର ବାରତା

କରିଅଛି ବିତରଣ ।

ବିଶ୍ୱ ସମୂହର କଲ୍ୟାଣ ମନାସି,

ଭାରତ ହେଉ ମହାନ ।୩୩ ।

ଗ୍ରା /ପୋ-ସାଙ୍କୁଡା, ଗଞ୍ଜାମ,

ଭ୍ରାମ୍ୟଭାଷା -୭୮୯୪୯୧୬୧୩୧





# ଜୟ ହେ ପାର୍ବତୀନନ୍ଦନ



ହମାଂଶୁ ଶେଖର ବାରକ

ଜୟ ହେ ପାର୍ବତୀ ନନ୍ଦନ
ଡାକ ଯାର ନାମ    ଦୂରଇ ଅଜ୍ଞାନ
ବନ୍ଦଇ ସେ ପଦ ସୁମନ ।।
ଇନ୍ଦୁର ବାହନ    କମଳ ମଣ୍ଡନ
ପିତାମ୍ବର ଯେ ପରଧାନ
ଲମ୍ବୋଦର ତୁମ    ମହମା ଅସୀମ
ବଦି ନ ପାରେ ଦେବଗଣ ।।
ଚତୁଷ୍ପାଣି ଆନ    ଏ ଜଗତ ଧାମ
କେ କରବ ବଘ୍ନ ନାଶନ
ପ୍ରଭୁ ଗଜାନନ    ଦରପ ଦଳନ
ପ୍ରତକ୍ଷଣ କର ସ୍ମରଣ ।।
ତ୍ରଶୂଳ ଚନ୍ଦ୍ରେ    ଶୋଭତ ବଦନ
ପ୍ରଣବ ସେଠି ପ୍ରକଟନ
ଏ ଏକ ଆହ୍ୱାନ    ଜାଣ ସର୍ବଜନ
ଦେଖାଏ ଯା ଜୀବନମାନ ।।
ବୁଦ୍ଧିଦାତା ଜ୍ଞାନ    ଦାତା ଭଗବାନ
କ୍ଷମାମୟ କୃପା ବାରଧିସମ
ମଙ୍ଗଳା ନନ୍ଦନ    ଗଣେଶ ଚରଣ
ଅଟଇ ମୋହର ଶରଣ ।।

ବରଷ୍ଠ ଅଡ଼ିଟ୍ ଅଧିକାରୀ
କ୍ୱାର୍ଟର ନଂ ଟାଇପ୍ ୩ - ୨୦୧
ନୂଆ ଏଜ କଲୋନୀ, ନୂଆପଲ୍ଲୀ
ଭୁବନେଶ୍ୱର - ୭୫୧୦୧୨



# ପ୍ରୀତ ଜୁଆର



କ୍ଷେତ୍ରବାସୀ ଜେନା

"ପ୍ରେମ ପରଶ"

ଆଖି ପଲକରେ ଚେହେରା ନାଚୁଛ

ସପନରେ ଆସୁ ତୁହ

ଯେତେ ଚ୍ହିଁଲେ ବ ଭୁଲବାକୁ ତୋତେ

ପାରେ ନାହିଁ ଭୁଲ ମୁହିଁ ।

ତୁମେ ମୋ ଜୀବନ ତୁମେ ମୋ ନୟନ

ତୁମେ ମୋ ହୃଦସ୍ପନ୍ଦନ

ଲକ୍ଷେ ଭାବନାର ଗହଳ ଭତରେ

ତୁମକୁ ଖୋଜଇ ମନ ।

ପ୍ରଭାତର ସେହ ପହଲ କରଣେ

ସତେକ କରୁଛ ସ୍ପର୍ଶ,

ଚ୍ହିଁ ବସିଛ ମୁଁ ତୁମ ଫେରବା ବାଟକୁ

ବତଯାଉ ବର୍ଷ ବର୍ଷ ।

ତୁମବନା ସାଥୀ କେମିତ ରହବ

କେଁଉଠି ନ ଲାଗେ ମନ

ଗ୍ଲଡ଼ିଗଲ ତୁମେ, ପ୍ରିୟତମା ମୋର

କେମିତ ଧରବ ଜୀବନ ।



# କି ମାଗିବି ବୋଲି



ମୋହନଚନ୍ଦ୍ର ବିଷୋୟୀ

କି ବୋଲି ମାଗିବି ପ୍ରଭୁ ତୁମକୁ,
ତୁମେତ ଅଟ ଆଦିଭିକ୍ଷୁ ।
କି ଅଭିଳାଶେ ଯିବି ତୁମ ପାଶେ,
କି ଦେଇଛି ବୋଲି କାହାକୁ ।

କୋକିଳ କଣ୍ଠରେ ଭରିଛି,
ମନ ଲୋଭିସ୍ୱରକୁ
କି ଦୋଷ କରିଲି ବୋଲି ସେ,
ଅଙ୍ଗେ ବୋଳି ଦେଲି କଳାକୁ ।

ଅପୂର୍ବ ସୌନ୍ଦର୍ଯ୍ୟ ଛବି ଆଙ୍କିଲି,
ଆକାଶେ କି ବିଭବ ଦେଖିବାକୁ ।
ଚିତ ରଞ୍ଜିତ ରୂପରେଖ ଦେଲି,
ବିକଟାଳେ ଗର୍ଜୁଥିବା ବିଜୁଳିକୁ ।

କି ଶୋଭି ଦେଖିବାକୁ ସତେ,
ଶୋଭନୀୟ କଲି କାଶତଣ୍ଡୀ ଫୁଲକୁ ।
ଗନ୍ଧହୀନ କରି ବିତାଡ଼ିତ କଲି
ନଈକୂଳେ ନାଚି ଘୁରିବାକୁ ।

କି ଦୋଷେ କ୍ଷଣସ୍ଥାୟୀ କରିଛି,
ସୂମଧୁର ମହୁ ଦେଉଥିବା ଫୁଲକୁ ।
କି ଦରବ ଦେଲି ଯେ ତୁମକୁ,
ଚୀରସ୍ଥାୟୀ କରିଛି ନିଷ୍ଠୁର ପଥରକୁ ।

ସ୍ଥାନ:ଖରଖରିଆ, ଚିକିଟି, ଗଞ୍ଜାମ୍, ଓଡିଶା
ଦୂରଭାଷ:୦୮୮୯୭୨୧୨୬୦୨
ଇମେଲ୍:mohan.bisoyee@gmail.com



# ଖୋଜେ ମୁଁ ତୁମର ପରଶ



ପ୍ରଶାନ୍ତ କୁମାର ନାଥ

ଆକାଶ ଛାତରେ ଜହ୍ନ ଉଇଁଗଲେ
ବୁଜ ହୋଇଗଲେ ମୋର ଆଖିପତା
ପରଦେଶେ ରହି ଗାଁ ଭୂଇଁ ଭୁଲି
ଭାବୁଥାଏ ମୁଁ ଯେ ତୁମର କଥା ।
ଗତର ବୟସ ବଢ଼ିଗଲା ପରେ
ଶୁଏ ଯେବେ ମୁଁ ନଗେଲା ଗତରେ
ଆସ ପ୍ରିୟା ତୁମେ ମୋ ସପନରେ
ଦେଖେ ତୁମକୁ ମୁଁ ମୋ ସାଥିରେ ।
ଶୀତ ସକାଳର କଅଁଳ ଖରାରେ
ମେଘ ଆକାଶର ଇନ୍ଦ୍ରଧନୁ ତୀରେ
ଗାଡ଼ି ମଟରର ଘୁଁ ଘୁଁ ଶବ୍ଦରେ
ଖୋଜୁଛି ତୁମକୁ ମୁଁ ହୃଦୟ ଭିତରେ ।
ବର୍ଷା ଜଳର ପାଣି ଫୋଟକାରେ
ଜହ୍ନ ଆକାଶର ତୋଫା ଆଲୁଅରେ
ଶୋଷ ମାରୁଥିବା ପାଣି ଗିଲାସରେ
ଦେଖେ ତୁମ ଛବି ସବୁ ସମୟରେ ।
ଖୋଜେ ମୁଁ ତୁମସେ ସୁକୁମାରୀ ହସ
ମତୁଆଲା ତୁମ ସେ କଅଁଳ ବୟସ
ଇଚ୍ଛା ହୁଏ ମିଳନ୍ତା କି ତୁମର ପରଶ
କିନ୍ତୁ ସବୁ ଆଣିଦଏ କେବଳ ନିରାଶ ।

ନଂ-୧୦, ଫାର୍ଷ୍ଟ ଫ୍ଲୋର୍, ଫାଷ୍ଟ ବି କ୍ରସ୍, ଏସ୍.ଜି.ଏନ୍.ଲେ ଆଉଟ୍
କସମିକ୍ ଏମ୍ବାସୀ, ଜେ ସି ରୋଡ଼, ବେଙ୍ଗାଲୁରୁ - ୨୭





# ଲଜକୁଳୀ ଲତା



ମିନତୀ ପ୍ରଧାନ

ଲଜକୁଳୀ ଲତା
ଖୁସି ଅଛ ଏଇ ଘାସ ପଡ଼ିଆରେ
ମେଲାଇ ତା ଛୋଟପତ୍ରର
ସବୁଜମା, ହସୁଛ, ଖେଳୁଛ
ଦୋଳ ପବନ ସାଥିରେ
ସୂରଜକୁ ଅନାଇ ପାଉଛ ଆନନ୍ଦ ।

ଛୁଅନା ! ଅକାରଣରେ ତାକୁ
ପତ୍ରସବୁ ଝାଉଁଳବ,
ଯୋଡ଼ିଯିବ ଶୁଖାଇ ମୁହଁକୁ
ଦେଖିପାରବନ, ସୂରଜ କରଣ,
ହଜଯିବ ତାର ସେଇ ଖିଲଖିଲ ହସ ।

କ ଲାଭ ବା ହେବ ତୁମର ?
ସେଇ ସ୍ୱାର୍ଥପର ସ୍ପର୍ଶରେ !
ଦେଖିବାଛଡ଼ା କେବଳ,
କେମିତ ଯୋଡ଼ିବେ, ସେଇ
ଖୋଲା ପତ୍ର ସବୁ ।

ବଗିଚ୍ଚର ଫୁଲ ପର
ତାର ତ ଲୋଡ଼ା ନାହିଁ



ମାଳର ଯତନ,

ତା ଆଖିରେ ନାହିଁ କେବେ

ଦେବତା ଗଳାରେ

ଶୋଭପାଇବାର ସ୍ୱପ୍ନ ।

ବଧାତାର ଦେୟକୁ

ସେ ରଖିଛ ସେପର

ଏତେ ବଡ଼ ଦୁନଆରେ

ତାର  ସେଇ ଛୋଟ ପ୍ରଜାତକୁ

ବଞ୍ଚିବାକୁ, ହସିବାକୁ, ଖେଳବାକୁ

ଦଅ ... ତାକୁ ନଷ୍ଟ ନ କର.......

ଏ-୩୦୧, ସୁରଭ ଆପାର୍ଟ୍‌ମେଣ୍ଟ୍ସ

ରଙ୍ଗ କଲୋନୀ ରୋଡ଼, ବାନେର୍ଘଟ୍ଟା ରୋଡ଼, ବେଙ୍ଗାଲୁରୁ - ୭୬



# କହରେ ମୋ ଧନ



ହେମପ୍ରଭା ମହାନ୍ତ

କ ଗୀତ ଲେଖିବ କହରେ ମୋ ଧନ

କ ଗୀତ ଲେଖିବ କହ ।

ପ୍ରଭୁ ଝାଡ଼େଶ୍ୱର କଲ୍ୟାଣ କରନ୍ତୁ

ଦୀର୍ଘଜୀବ ତୁହ ହୁଅ ।

ମା, ବାବାଙ୍କର ଏକୋଇର ବଳା

ରୁକ୍ମଣୀ ରତନ ଧନ ।

ଭଲ କାମ କର ମଣିଷ ହୁଅ ତୁ

ହସୁ ସଭଙ୍କର ମନ ।

ଅମୂଲ୍ୟ ସମ୍ପଦ ଅଟେ ମା ବାବା

ତାଙ୍କୁ ତୁ ଭୁଲିବୁ ନାହିଁ ।

ଅବହେଳା ଦନେ ନ କରିବୁ ତୁହ

ପଥର ପଡ଼ିଲେ ସହ ।

ରକ୍ତର ସମ୍ପର୍କ ଦୂରେଇ ଦେବୁନ

ହୃଦୟରେ ଦେବୁ ସ୍ଥାନ ।

ଗୁରୁଜନେ ଭକ୍ତି ରଖିଥିବୁ ସଦା

ସ୍ନେହ ଦେବୁ ଲଘୁଜନ ।





ବଂଶ ମର୍ଯ୍ୟାଦାକୁ ନ ପକାଇ ତଳେ

ସଦା ଟେକ ରଖିଥିବୁ ।

ଧର୍ମବଳେ ସିନା ସଂସାର ଚଳୁଛି

ଅଧର୍ମକୁ ତୁ ନ ଯିବୁ ।

ପାଠ ପଢ଼ିଲେ ତୁ ଜ୍ଞାନ ଅରଜିବୁ

ନଥିବ ତୋତେ ଅଜଣା ।

ଜ୍ଞାନୀ ଲୋକ ହେଲେ ସବୁଠି ଆଦର

ସମାଜରେ ହେବୁ ଗଣା ।

ମାମୁଁ ମାଇଁଙ୍କର କୁଳର ନନ୍ଦନ

ତାଙ୍କୁ ତୁ ଭୁଲିବୁ ନାହିଁ ।

ମାଉସୀ ପିଉସୀ ଯେ ଯେତେ ଅଛନ୍ତି

ଆତ୍ମୀୟ ସ୍ୱଜନ କେହି ।

ମା ମଙ୍ଗଳାଙ୍କୁ ଘଣ୍ଟି ଘୋଡ଼ାଇବୁ

ଅଶେଷ ଆଶିଷ କର ।

ସଭିଙ୍କ ଆଶିଷ ବରଷୁ ତା'ପରେ

ସୁଖରେ କରୁ ସଂସାର ।





# କହରେ କାଳଆ



ଲୀନା ମହାନ୍ତ

କେତେ ଆଉ ଭୁଲଠିକ୍ ସତମିଛର,
ହସାବ କରବରେ କାଳଆ...
କେତେ ଆଉ ସୁଖଦୁଃଖର
ହସାବ କରବରେ କାଳଆ...
କହରେ କାଳଆ ! ! !
ହସାବ କର କର ଖାଲ,
ଯନ୍ତ୍ରଣାରେ ଭର ଯାଉଛ ଏ ମନ
ଭୁଲ କଣ ସବୁ ମୋର ! !
କଣ ପାଇଁ ତୁ ସବୁ ଦେଖି
ଆଖି ବୁଜ ଦେଉଛୁ...
କଣ ପାଇଁ ତୁ ସବୁ ଶୁଣି
କାନ ବୁଜ ଦେଇଛୁ...
କହରେ କାଳଆ ! !
କେବେ ଆଉ କରବୁ ତୁ
ପାପର ନାଶନ,
କେବେ ଦେଖେଇବୁ ତୁ
ତୋର କଲ୍କୀ ଅବତାର ?
କହରେ କାଳଆ...
ଯନ୍ତ୍ରଣା ଖାଲ ମୋର ନୁହେଁ
ମୋ ଭଳ ଅନେକ ଏମିତ ଅଛନ୍ତ
ତୋର ଭୁଲଠିକର ହସାବକୁ
ଗୃହିଁ ରହଛନ୍ତ ।
କହରେ କାଳଆ...
ଆଉ କେତେ ଦନ ! ! !



# ଗଙ୍ଗା



ଶାରଦା ପ୍ରସାଦ ପରଡ଼ା

ମୂଳ ରଚନା - ଅରବନ୍ଦ କ୍ରଷ୍ଣ ମେହୋତ୍ରା

ଗଙ୍ଗା ମୁଁ ଜନମିଛି ପର୍ବତ କନ୍ଦରୁ
ଝରଯିବ ସାଗର ପର୍ଯ୍ୟନ୍ତ
ମାୟା ମୁଁ, ମୋହ ମୁଁ
ସୃଷ୍ଟି ମୁଁ, ସ୍ରଷ୍ଟା ମୁଁ
ଜୀବନର ଧାର ଅମୃତ ବନ୍ଦୁ ମୁଁ ।

ଛୁଇଁଛି ପାହାଡ଼ ଶିଖର
ଦେଖିଛି ଶସ୍ୟଶ୍ୟାମଳ କ୍ଷେତ
ହସେଇଛି ହସ ଗରବର ଓଠେ
କରଛି ବଲୀନ ଝରଣାକୁ
ସାଗରରେ ମୁଁ ।

ମୁଁ ଅତ୍ରତତ୍ର, ସର୍ବତ୍ର ମୁଁ,
ପବତ୍ର ମୁଁ,
ମୁଁ ହିଁ ତ ଶୁଭଲଗ୍ନ
ଏକ ତର୍ପଣରେ କରପାରେ ମୁକ୍ତ
ସବୁ ପାପଭାରୁ ମୁଁ ।

ମୁଁ ଜୀବନ, ମୁଁ ମରଣ
ମୁଁ ହିଁ ତ ପଥ
ମୁଁ ଧନୁର୍ଧାରୀ ହୋଇ ହରପାରେ ଦୁଃଖ
ଏକ ସୂକ୍ଷ୍ମ ନାରଚର ସନ୍ଧାନରେ ମୁଁ ।

ମୁଁ ନାରୀ, ମୁଁ ନର
ଅବର୍ଣ୍ଣନୀୟ ପୋଥିର





ଅସରନ୍ତ ଅଧ୍ୟାୟ ମୁଁ,
ମାନେନା ଜାତ-ଧର୍ମ-ବର୍ଣ୍ଣର ବଭେଦ
ଏ ସମଗ୍ର ବଶ୍ୱ ହିଁ ତ ମୁଁ ।

ମୁଁ ସ୍ୱଚ୍ଛ, ଶୁଭ୍ର
ପୂଣ୍ୟ ଜଳ ପ୍ରବାହନୀ
ମୁକ୍ତିର ପଥ ବ ମୁଁ ।

ଜାଣେନା ମୁଁ ରାଜନୀତ
ଧରେନା ମୁଁ ଟାଳଟୁଳ ନୀତ
ଧରଆଣେ ବର୍ଷା ମୁକ୍ତ ଆକାଶରୁ
କରପାରେ ବଷାକ୍ତ ସବୁକଛ
ମାନବରୂପୀ ଦାନବର
ହଳାହଳ ବଷ ଜ୍ୱାଳାରେ ମୁଁ ।

ମୁଁ ଧୁଆଁରୁ ଶିଖିଛି ଉଭେଇବାର ମନ୍ତ୍ର
ସାଗରରୁ ସଂଯମତା
ବହଙ୍ଗରୁ ନୀଡ଼ ଗଢ଼ିବାର କଳା
ବ୍ୟାଘ୍ରଠାରୁ ଲୁଚକାଳ ଖେଳ ।
ମୁଁ ଭୀମ, ମୁଁ ଭୈରବ
ମୁଁ ଗଢ଼ିପାରେ, ମୁଁ ଧ୍ୱଂସିପାରେ ।

ମୁଁ ଧନୀ, ମୁଁ ଦରଦ୍ର
ମୁଁ ବର୍ଷାରେ କରପାରେ ବନ୍ୟା,
ବଇଶାଖେ ତରଭୂଜ ହୋଇ
ହରପାରେ ତୃଷ୍ଣା ମୁଁ ।

ଅଧ୍ୟାପକ, କୋଣାର୍କ ବଜ୍ଞାନ ଓ କାରଗରୀ ମହାବଦ୍ୟାଳୟ
ଜଟଣୀ, ଭୁବନେଶ୍ୱର

# ମାୟାବିନୀ ପ୍ରେମିକା



ଶିଶିର କୁମାର ସାମଲ

ସୁନାର ହୃଦୟ  ଚୁନା କରଦେଇ
କି ଲାଭ ପାଅ ଗୋ ସାଥୀ,
ତୁମେ କି ଜାଣିବ   ତୁମ ବିନା ମୋର
ଉଜାଗର ପାହେ ରାତି ।
ଜହ୍ନଭଳି ତୁମ   ଜୋଛନାରେ ଟିକେ
ଭାବଥିଲି ଭିଜିବାକୁ,
ଅମାବାସ୍ୟା ପରି   ତୁମ ଛଳନାରେ
ହଜାଇଦେଲି ନିଜକୁ ।
ନୀଳ ନୀଳ ତୁମ କଥା କୁହା ଆଖି
ମନ ନେଇଥିଲା କିଣି,
ମାୟାବିନୀ ରୂପେ   ପ୍ରେମକୁ ସଜେଇ
ବାନ୍ଧିଦେଲ ଜାଣି ଜାଣି ।
ଏକା ଏକା ଏଇ ଜୀବନରେ ମୋର
ନଥିଲା କାହା ଭାବନା,
ଏକାରୁ ପ୍ରେମିକା   ବାଛନେଲା ପରେ
ହୋଇଗଲି ଆନମନା ।
ପ୍ରେମିକ ମନ ମୋ   ଭାଙ୍ଗିଦେଇ ତୁମେ
କି ଲାଭ ପାଇଲ କୁହ,
ଫୁଲ ଖୋଜୁ ଖୋଜୁ   କଣ୍ଟାର ଆଘାତେ
ଲହୁରେ ଭିଜେ ମୋ ଦେହ ।

କଣ୍ଟିପୁର, ଯାଜପୁର
ଦୂରଭାଷ : ୭୮୯୪୦୭୦୬୬୬



# ଫେରି ଯା' ମାଆ



ସୁସ୍ମିତା ମହାପାତ୍ର

କର୍ଫ୍ୟୁ ଉଠୁଛ ରାସ୍ତା ଘାଟରୁ ଆଶ୍ୱାସ ମନେ ଭରେ
ଅସ୍ତବ୍ୟସ୍ତ ଜୀବନ ଆମର ସୁସ୍ଥ ହେଉଛ ଧିରେ ।
ଆସ୍ତେ ଆସ୍ତେ ଅଶିଣାଗମନେ ଶୁଖୁଛ ପରଣ ଘାଆ
ଚଉଦଗ ସାର୍ ଉଠୁଛ ପଡୁଛ ଆସିବୁ ବୋଲି ତୁ ମାଆ ।
ନଈ ଧାରେ ଧାରେ ଅତ ସର୍ଗରେ କାଶତଣ୍ଡୀ ଫୁଲେ ପଥ
ସଜାଉଛ ଧର୍ ଭେଦୁଅରୁ ପର୍ ଆସିବ ବୋଲି ତୋ ରଥ ।
ଆବାଳ-ବୃଦ୍ଧ-ବନତା ମନରେ ଝଲସୁଛ ଖୁସି ଆଜ
ଉଲ୍ଲସି ଉଠେ ଗିରବନ ତୋଟା ଲତକା ଗୁଲ୍ମରଜ ।
ଆଲୋକମାଳାରେ ଝଟକବ ସାର୍ ସହରରୁ ମଫସଲ
ସଜେଇ ଧଜେଇ ଝିଅ ଭୁଆସୁଣୀ ମଣ୍ଡପେ ହେବେ ଠୁଳ ।
ପୁନର୍ବୃତ୍ତି ହେବ ପୁଣି ସେଇ ସମ୍ବେଦନାର ପ୍ରଥା
ପଡ଼ିଯିବ ବଳ ଅନେକ ନରୀହ ନଷ୍ପାପ ପଶୁ ମଥା ।
କାହିଁ କେତେ କୋଟି ବ୍ୟୟ କର ଆମେ କରବୁ ତୋହର ପୂଜା
ଦୀନଦୁଃଖୀରେ ବଦ୍ରୁପ କର ଫେରଯିବୁ ତୁହ ଉଡ଼ାଇ ତୋହର ଧ୍ୱଜା ।
ବାହୁଡ଼ିବା ପଥେ ଭଆଇବୁ ପୁଣି ଜାତଆଣ ଭେଦଭାବ
ଭାତୃଭାବର ସହରୁ ଛଡ଼ାଇ ଶାନ୍ତ ପ୍ରୀତର ଅସୁମାର ବୈଭବ ।
ଅର୍ଘ୍ୟ ପୁଷ୍ପ ଅରପି ତୋ ଚରଣେ ସ୍ୱାଗତ ସମ୍ଭାଷଣେ
ବାଣରେଶଣୀରେ ସନ୍ତାନ ତୋରେ ମର୍ତ୍ତ୍ୟକୁ ଆଣେ, ଭକ୍ତି ଉଚ୍ଛୁଳା ପ୍ରାଣେ ।
ବନମଧ୍ୟେ ତାର ବେଦନା ଯାତନା ଯାବତୀୟ ଦେଉ ଭର,
ହୁଏ କବା ଉଣା ଛେଳ ବଳ ତଥା ଭେଗରଗ ପଣା, ସୁଖଶୀର ନେଉ ହର ।
ତୋର ଆଗମନେ ମର୍ତ୍ତ୍ୟ ଭୁବନେ ହୃଦୟ ବ୍ୟଥିତ ଯହିଁ
ସରଗୁଁ ଆଶିଷ ବରଷି ଦେ ମାଆ ଆଗମନ ତୋର, ଲୋଡ଼ା ନାହିଁ ଲୋଡ଼ା ନାହିଁ ।

ଏନ୍.ଏ.ସି. (ଏସ୍.ଟି) ସରକାରୀ ଉଚ୍ଚ ବଦ୍ୟାଳୟ
ସେକ୍ଟର-୧୬, ରଉରକେଲା - ୩, ସୁନ୍ଦରଗଡ଼
ଇମେଲ୍ - susmita6674@gmail.com



# ବଧାତାର ଆଶୀର୍ବାଦ



ସୌରଭ କୁମାର ପଣ୍ଡା

ଖାଇବାକୁ ନାହିଁ ଦ'ମୁଠା ଓଳକୁ
ପିନ୍ଧିଛ ଜାମା ଖଣ୍ଡିଆ ।
ମୁଣ୍ଡ ଗୁଞ୍ଜିବାକୁ ଘର ଖଣ୍ଡେ ନାହଁ
ଦାଣ୍ଡରେ ହୋଇଛ ଠିଆ....... ।୧ ।
ପରଚୟ ମୋର ଜହ୍ନ ହିଁ ଜାଣିଛ
ଖରା ଚହ୍ନଚ ମୋ ଦେହ ।
ରସ୍ତା ହିଁ ହେଇଛ ମୋ ଜୀବନ ସାଥି
ମାଟି ଦେଖିଛ ମୋ ଲୁହ........ ।୨ ।
ବର୍ଷା ହିଁ କହବ ମୋ ପ୍ରେମ କାହାଣୀ
ବୈଶାଖ କହବ ଦୁଃଖ ।
ଫଗୁଣ ଜାଣିଛ ମୋ ବରହ ଗାଥା
ବସନ୍ତ ଜାଣିଛ ଭୋକ.......... ।୩ ।
ଯାହାବ ପାଇଛ ନଜ ଭଗ୍ୟ ବୋଲ
କେବେ କରନାହିଁ ଖେଦ ।
ଯାହାବ ପାଇଛ ମନରେ ଭବଛ.......
ବଧାତାଙ୍କ ଆଶୀର୍ବାଦ ।୪ ।





# ବହୁତ ମନେ ପଡ଼ନ୍ତି



ପରମିତା ମିଶ୍ର

ବହୁତ ମନେ ପଡ଼ନ୍ତି, ସେ ବହୁତ ମନେ ପଡ଼ନ୍ତି
ଆମ ଝିଅ ଯେବେ ରାତିରେ ଉଠି
ପଚାରେ ମା, ବାପା କାହାନ୍ତି
ଖଟ ପାଖରେ ଫଟୋ ତାଙ୍କର
ଶୋଇଯାଏ ତାକୁ ଜାବୁଡ଼ିଧରି
ବାପା ତାଙ୍କର ଯେ ଆଉ ଆସିବେନି
ଉତ୍ତର ବା ତା'କୁ ଆଉ କଣ ଦିଅନ୍ତି ?
ବହୁତ ମନେ ପଡ଼ନ୍ତି, ସେ ବହୁତ ମନେ ପଡ଼ନ୍ତି ।
ରାତି ପାହି ନିତି ସକାଳ ହୁଏ
ନୀଡ଼ପକ୍ଷୀ ପୁଣି ନୀଡ଼େ ବାହୁଡ଼ିଯାଏ
ଶାଶୁ ମାଆ ମୋର ଦୁଆର ମୁହେଁ
ପୁଅ ଆସିବା ବାଟକୁ ଚାହିଁ ରହନ୍ତି
ଶ୍ୱଶୁର ମୋ ଭାରି ଦାମ୍ଭିକ
ଲୁଚିଯାଇଛି ତାଙ୍କ ହସ ଟିକିକ
ତାଙ୍କର ଫଟୋ ଆଗରେ ରହି
ଏକା ଲୟରେ ତାଙ୍କୁ ଦେଖୁଥାଆନ୍ତି,
ବହୁତ ମନେ ପଡ଼ନ୍ତି, ସେ ବହୁତ ମନେ ପଡ଼ନ୍ତି ।
ଅସରନ୍ତି କଥା ମନରେ ଧରି
କୋହକୁ ମନରେ ଚାପି ନ ପାରି
ଅଜାଣତେ ଯଦି କେବେ ଲୁହ ଯାଏ ଗଡ଼ି
ଆମ ପୁଅଝିଅ ପୋଛି ଦିଅନ୍ତି ।



କେବେ କେବେ ଟିକେ ଥକ ଯାଉଛ

କନ୍ତୁ ହାରବନ କଥା ଦେଉଛ

ଜାଣିଛ ମୁଁ, ତୁମେ ସଦାବେଳେ

ମୋ ପଛେ ରହଥିବ ଏମିତ

ଆଜ ବ ଯେବେ ତାଙ୍କ ଭାବନାରେ

ଗର୍ବରେ ଯେବେ ମୁଁ ଗସ୍ତାରେ ଗ୍ଲେ

ଲୋକେ ଶହୀଦର ସ୍ତ୍ରୀ ବୋଲି କହନ୍ତ୍ର

ବହୁତ ମନେ ପଡ଼ନ୍ତ୍ର, ସେ ବହୁତ ମନେ ପଡ଼ନ୍ତ୍ର ।

କ୍ୱାର୍ଟର୍ ନଂ : ପି - ୬/୪

ବଏନ୍ସି ଲେନ୍, ବାନର୍ପେଟ୍

ବେଙ୍ଗାଲୁରୁ - ୪୭



# ମୁଁ କିଏ



ପରମିତା ମିଶ୍ର

ଗତର
ଏକ ବଦଗ୍ଧ ଦୀପ ମୁଁ
ଯାହାର ଅନ୍ତ ଅତ ନକଟତର
ଜଳ ଜଳ ସେ ଭସ୍ମିତ
ଗର୍ଭେ ଆଉ ନାହିଁ ତେଲ ଟୋପେ ତାର ।
ତୁମ ସ୍ୱପ୍ନର
ଏକ ଅର୍ଦ୍ଧଭଗ୍ନ ମୂର୍ତ୍ତି ମୁଁ
ଯାହାର ତୁମ ମହଲରେ ସ୍ଥାନ ନାହିଁ
କେବଳ ମାଟି ହିଁ ମାଟି
ନା ନାହିଁ ଜୀବନ ଟିକିଏ ତା'ଠି ।
ସମୁଦ୍ରର
ଭଙ୍ଗା ଗଢ଼ା ଢେଉ ପର ମୁଁ
ଭସି ଭସି ଗ୍ଲଲଯାଏ ବହୁଦୂରକୁ
ତୁମେ ଦେଇଥିବା ସର୍ବସ୍ୱ ନଜ ବୁକୁରେ ଜାବୁଡ଼ି
ଗ୍ଲଲଯିବ ଅନନ୍ତ ମଧକୁ
ନଦୀର
ଏକ ଜର୍ଜରତ ନୌକାଟିଏ ମୁଁ
ମୁମୂର୍ଷୁ ଅବସ୍ଥାରେ ଅତ୍ୟନ୍ତ





ଅନ୍ତର୍ବାର ଢୁବକର ମଧ

ଭସିବାକୁ କରୁଛ ପ୍ରଯତ୍ନ ।

ପ୍ରକୃତର

ଅନନ୍ୟ ସୃଷ୍ଟି ତୁମେ ଓ ମୁଁ

ମୁଁ ନଦୀର ଅନ୍ତ, ତୁମେ ଗଗନର ଦଗବଳୟ

ସୃଷ୍ଟି ଆରମ୍ଭରୁ ଅନ୍ତଯାଏ

ଦନେ ଆମ ମିଳନ ନଶ୍ଚୟ ।

କ୍ୱାର୍ଟର୍ ନଂ : ପି - ୭/୪

ବଏନ୍‌ସି ଲେନ୍, ବାନର୍‌ପେଟ୍

ବେଙ୍ଗାଲୁରୁ - ୪୭





# ସ୍ୱାମୀ



ବରୁଣ କୁମାର ଦାସ

ଡାକ୍ତର ସ୍ୱାମୀଟେ ସ୍ତ୍ରୀର ଦେହକୁ
ଟୁକୁର୍ କର ଫ୍ରିଜରେ
ସାଇତ ରଖିଛି,
ସଭଙ୍କୁ ମିଛ କହୁଛି
କ୍ଲନକ୍ ଯିବା ରସ୍ତାରେ
ଜଙ୍ଗଲରେ ଫିଙ୍ଗିଦେଇ ଯାଉଛି
ଗୋଟିଏ ଗୋଟିଏ ଖଣ୍ଡକୁ ।

ଶିକ୍ଷକ ସ୍ୱାମୀଟେ ସ୍ତ୍ରୀକୁ
ମରଣ ମୁହଁକୁ ଠେଲଦେଇ ନାହିଁ
କନ୍ତୁ ବଞ୍ଚିବା ତା'ପାଇଁ
ମୃତ୍ୟୁଠୁ ବ ନାରକୀୟ
ଯନ୍ତ୍ରଣାର ଜଉଘରେ
ବନ୍ଦୀ ଶରୀର ଆଉ ମନ
ସରୁନ ଯେମିତ କଷଣ ।

ସ୍ତ୍ରୀକୁ ମୁମ୍ବାଇ ନେଲପରେ
ମିଗକଲ୍ ହୋଇଛି
ଦାବୀ ସ୍ୱାମୀର

ସ୍ତ୍ରୀଟା ଏବେ ନାରୀରୁ





ବନଯାଇଛ ଏଟିଏମ୍

ଟଙ୍କାର ଅଭବ ନାହିଁ

ସ୍ୱାମୀଟା ବଡ଼ ଖୁସି

ସ୍ୱୀକୁ ବାରମ୍ବାର ଉପହାର ଦେଇ ଅନ୍ୟଠି ।

ଦାନ ମାଝି ବ ସାଧାରଣ ସ୍ୱାମୀଟେ ସ୍ୱୀର

ଇଚ୍ଛାକୁ ମର୍ଯ୍ୟାଦା ଦେଇ

ସ୍ୱୀର ଶବକୁ ବ କାନ୍ଧେଇ ଫେରଛ ଗାଁକୁ ।

ସାଧାରଣ ପୋଷାକ ଭତରେ

ସାର୍ଥକ ମଣିଷପଣିଆ

ନର୍ଭେଜାଲ୍ ଆନ୍ତରକତା

ନରୁତା ଭଲପାଇବା ।

ସମ୍ପର୍କ ଭତରେ ନାହିଁ ଜମା

କଛର ବ ଛଳନା

ଆଖୃ ଆଗରେ ଜଳ ଜଳ

ସ୍ୱାମୀ ପଣର ସୁନ୍ଦର ନମୁନା ।

ଇମେଲ୍ - barunkumardas1@gmail.com



# ଏଣିକ ଖାଲି



ଡା ନୀଳମାଧବ କର

ଆଉଟିକେ
ଅଧିକ ସମୟର
କଷ୍ଟ ।

ବଞ୍ଚିସାରିଥିବା ଓ
ଏ ପର୍ଯ୍ୟନ୍ତ
ବଞ୍ଚି ରହିଥିବାର
କଷ୍ଟ ।

ଜୁଇରେ
ଜଳିବା ଯାଏ
ଶବଟିର ଅପେକ୍ଷାରେ
କଷ୍ଟ ।

ଶୂନ୍ୟରୁ ଶୂନ୍ୟଯାଏ
କଷ୍ଟରେ ହିଁ ଛପିଥାଏ
ଜୀଇଁବାର ସ୍ପନ୍ଦନ
ଆଉଟିକେ
ଅଧିକ ସମୟର
ଅନ୍ୟନାମ
ହୁଏତ ଜୀବନ ।

ମାନସିକରୋଗ ଚିକିତ୍ସା ବିଶେଷଜ୍ଞ
ୟୁକେ





# ବଳଦାନ



ଡା ସରୋଜନୀ ପଟ୍ଟନାୟକ

ଉର ଇନ୍‌ଫାଣ୍ଟ୍ରି ବ୍ରିଗେଡ୍ ଅଫିସ ପଛରେ
ଥରୁଛ ଆକ୍ରମନର ମୁକସାକ୍ଷୀ ପାହାଡ଼
ଝେଲମ୍ ନଦୀରେ ଲହୁର ବନ୍ୟା
ବୁକୁଫଟା ଚତ୍କାରରେ ଆତ୍ମହରା
ସିନ୍ଦୁର ଫାଟିବା ସକାଳ
ସିନ୍ଦୁର ପୋଛ ଶୂନ୍ୟରେ ଗୁହିଁଛ
ବୀରପତ୍ନୀ ଫଟା କପାଳ
ଭଙ୍ଗାଚୁଡ଼ି ତାର ନଶବ୍ଦରେ କୁହେ
ତୁମେ ବଜ୍ର ଶପଥ ନଅ
ହମାଳୟ ପର ଦମ୍ଭ ହେଉ
ଏ ନଶ୍ୱର ଦେହଦନେ ମିଶିବ ମାଟିରେ
ହେଲେ ନଜ ମାଟିପାଇଁ ମାଟି ହେବା
ଥାଏ କେତେ ଜଣଙ୍କ ଭାଗ୍ୟରେ ?
ସେ ପାର୍ଲିଆମେଣ୍ଟ ହେଉ ଅବା ମୁମ୍ବାଇ ଆକ୍ରମଣ
ପଠାନକୋଟ୍‌ର ବାୟୁସେନା ଘାଟି ହେଉ
ଅବା ହେଉ ଉର ଆକ୍ରମଣ
ଆତଙ୍କବାଦର ଲେଲହାନ ଶିଖାକୁ
ଲିଭାଇବାକୁ ହେଲେ





କିଛି ରକ୍ତରେ ଭିଜାଇବାକୁ ହୁଏ

ଆଉ କିଛି ରକ୍ତର ନିର୍ବାପନରେ

ମୁଁ ସିଂହବାହିନୀ ଦେଶର ସନ୍ତାନ

କେବେ ମାର ସୁରକ୍ଷାପାଇଁ

ଶତ ସିଂହର ବଳ ବାଜିଲ୍‌ଗେ

କିଛି ଜୀବନର ସମର୍ପଣ

ସଂଘର୍ଷର ସୀମାନ୍ତରେ

ଗ୍ରେନେଡ଼ର ଦୃତ ନିକ୍ଷେପରେ

ଦେହରୁ ବିଦେହ ହୋଇ

ବୀର ପ୍ରସବିନୀ ମା କୋଳରେ

କିଛି ଆତ୍ମାର ବଳିଦାନ

ମେଡ଼ିକାଲ ଅଫିସର (ଆୟୁଷ)

ଗୁଦିବାଲି, ଭଦ୍ରକ

ପିନ୍ : ୭୫୬୧୩୨



# ସ୍ମୃତରେ...



ଡା ସନ୍ଧ୍ୟାରଣୀ ପାଣିଗ୍ରାହୀ

ଏ ମଧୁର ସଫେଦ ସ୍ମୃତରେ
ଏକ ମିଠା ମିଠା ମହମହ ବାସରେ
ଏବେ ଅଝଟିଆ ଜହ୍ନ ହସୁଛ
ଯେମିତ କେଉଁ ପ୍ରେମିକାକୁ ତାର
ଚୁମ୍ବନ ଦେଇ ଆସିଛ
ସର ସର ଦେହରୁ ସେ ଶାଢ଼ୀ ଖସୁଛ
ଅଲାଜୁକ ଆଖିରେ ତନୁ ରୂପଶ୍ରୀ ନାଚୁଛ
ଏ ବେଳାରେ କେତେ ଅବୁଝା ଅକୁହା
କଥା ମନରେ ରହଛ
ତୁମେ ଆସ ଓ ପାଖରେ ବସ
କେବଳ ମନ ଏ ଗୁହୁଁଛ
ଅନାମିକା ନାୟିକା ପ୍ରେମିକାର
ନାମରେ ଚଠି ଲେଖୁଛ
ଏ ନୀଳ ମେଘର ବର୍ଷା ରେ
ମନ ଖୁବ୍ ଭିଜୁଛ

ଚଠି ଏ ଅଗଣାରୁ ସେ ଅଗଣାର
ଠିକଣାରେ ପଠାଇବ ଭାବୁଛ
ଯଦ ଠିକଣା  ଭୁଲ ହେବ
ତୁମେ ହିଁ ଖୋଜବ ଜାଣିଛ





ଅତୀତର କିଛି ଅବିସ୍ମୃତ ଘଟଣା
ଏବେ କେବଳ ସ୍ମୃତି ହୋଇ ରହିଛି
ଆଉ ସେ ବେଳାର ପୁନରାବୃତ୍ତି ହେଉ
ଏ ମନରେ କାମନା ଜାଗିଛି
ମାଗିବାର ଥିଲି ସମୟର ମୋତି କିଛି
ଏ ଜୀବନ ସମୁଦ୍ରରେ
ଏ ଏବେ ବି ହଜିଛି
ଓ ସେଥିରେ ବୁଡି
ମନରେ ମୋର ଫେରି ଆସୁଛି
ଅତୀତର ଅତଳ ଗର୍ଭରୁ
ସେ ମୋତି କଣ ଆଉ ମିଳୁଛି
ଏଥର ଏମୁଠାରେ କେବଳ
ଗୁଡାଏ ସ୍ମୃତି ଜାବୁଡି ରଖିଛି

ଅପହୃତ ସମୟର ସେ
ଅଦମ୍ୟ ଇଚ୍ଛାଗୁଡିକ ଗୁନ୍ଥାମାଳରେ
ମୋ ମନ ମନ୍ଥନରେ
କେତେ ଯେ ମୋଡ଼ ହେଉଛି
ସେ ତୁମକୁ ଏବେ ମନେ ପକାଉଛି
ଆଉଁସି ଦେଇ ତାର ଭାବ
ମନର ରଖିବ ଭାବିଛି
ସେ ଘୃଣାରେ ମଧ୍ୟ ପ୍ରେମ
କରିବ ବୋଲି ଆଶା ଜାଗିଛି



ସମୟର ଅଭ୍ବୀବୋଧ ମନଟା
କେବଳ ବକଳ ହେଉଛି
ଏ ଗୃନ୍ଦନୀ ଗତରେ
ସବୁଦନେ ଗଙ୍ଗଶିଉଳୀ ବାସୁଛି
ଏ ପ୍ରଣୟ ପ୍ରୀତର ବାସ ଚହଟୁଛି

ଏ ହୃଦୟର ପ୍ରୀତ ଫୁଲରେ
ଅସଂଖ୍ୟ ତାର୍ ଭରୁଛି
ସମର୍ପଣ ଓ ପ୍ରତ୍ୟପଣ ଭ୍ବରେ
ବନା ଆଶାରେ ପ୍ରେମ କରୁଛି
ହୃଦୟ ନସ୍ବ ହୋଇଯିବାର
ଏ ବେଳାରେ ମୁହୂର୍ତ୍ତ ବାଛଛି
ପ୍ରଣୟର ରୁତୁରେ ଏ ରୂପସୀ
ହଜଛି ଓ ମନାଉଛି
ମନାନ୍ତର ଓ ମତାନ୍ତର ମଧରେ
ସବୁ କଛି ସେ ବୁଝିଛି
ଆଉ ତୁମକୁ ସବୁ ବୁଝେଇବ
ଏ ଅଭସାର ରଚଛି

ବରଷ୍ଠ ସ୍ତ୍ରୀ ଓ ପ୍ରସୂତୀ ରୋଗ ବଶେଷଜ୍ଞା
ବ୍ରହ୍ମପୁର, ଓଡ଼ିଶା





# ନିଜକୁ ରଙ୍ଗୀନ କଲଣି



ଜୟନ୍ତୀ ବେହେରା

ମୋ ଇଚ୍ଛାମାନେ ବି
ଇଚ୍ଛା କଲେଣି
ଉଚ୍ଛିନ୍ନ ହେଲେଣି

ଆଜି,
କିଛି ଇଚ୍ଛାମାନଙ୍କର
ଇଚ୍ଛାକୁ ରଙ୍ଗଦେଇ
ଅଭୂଲ୍ ଅତୀତରୁ
ନ କରିପାରିଥିବାର
ପାରିବା ପଣ
ଭବିଷ୍ୟତରେ କଳ୍ପନାର
ନୀଳ ଆସ୍ତରଣ
ଫେଣ୍ଟାଫେଣ୍ଟି ରଙ୍ଗରେ
ନିଜକୁ ରଙ୍ଗୀନ କଲଣି ।

ଦେଖ,
ମୋ ସ୍ୱପ୍ନମାନେ ବି
ସ୍ୱପ୍ନ ଦେଖିଲେଣି
ଆଉ ଭାଙ୍ଗିପାରିବନି ତୁମେ
ଖୁବ୍ ଭାଙ୍ଗିଲ ମୋତେ
ଏବେ ମୁଁ ଅଭଙ୍ଗା ।



ତୁମେ ଦେଖେଇଥିବା
ଜହ୍ନର ରାସ୍ତାରେ
ପାଦ ଥାପିବାଦ ନାହିଁ
ତୁମ ସମୁଦ୍ରର
ଅମାପ ଗଭୀରତା
ମାପିବାର ନାହିଁ
ତୁମେ ଚଢ଼ିଥିବା
ଏଭେରେଷ୍ଟ ଶୃଙ୍ଗର
ଉଚ୍ଚତା ଜାଣିବାର ନାହିଁ ।

ମୋ ପାଇଁ ଏବେ
ଦୁଇ ପାଦରେ ଆବୋରିଥିବା
ମୋ ନିଜସ୍ୱ ପୃଥିବୀ ଯଥେଷ୍ଟ
ଯଦି ବି ମାଗିନେବ
ଗୋଟିଏ ପାଦର ଭୂମି,
ଏକ ପାଦରେ ନିଜକୁ
ସମ୍ଭାଳିବାର କୌଶଳରେ
ମୁଁ ଏବେ ଅଭ୍ୟସ୍ତ ।

ଗଞ୍ଜାମର କବିତା ଘର, ଅଙ୍କୁଲି,
ବ୍ରହ୍ମପୁର, ଓଡ଼ିଶା



# ବିନ୍ଦୁ ଅପା



ଜୟନ୍ତୀ ବେହେରା

ବିନ୍ଦୁ ଅପା
ଦଶବର୍ଷରୁ
ଭୟମିଶା ଲାଜରେ
ବୁଝୁଥିଲା, ବାହାଘର
ଫୁଲର ଶେଯ
କୋଳେଇବ ରାଜକୁମାର
ଘର ହେବ ଅନ୍ଧାର ।

ବିନ୍ଦୁ ଅପା
ବାରବର୍ଷରୁ
ଶୁଣୁଥିଲା, ବାହାଘର
ଟାହିଟାପରା, କ୍ଷୀର ଗିଲାସ
ଚୁଡ଼ି ଝଣଝଣ, ମହୁରେ ଜହ୍ନ
ବାପଘରକୁ ଫେରିଥିବା
ନବବିବାହିତା ସରିଅପା
ଶୀଘ୍ର ଶୀଘ୍ର ଫେରିବାକୁ
ଗ୍ହୁଁଥିଲା ଶାଶୁଘର ।

ବିନ୍ଦୁ ଅପା
ଚଉଦ ବର୍ଷରୁ
ଭଲ ଲାଗୁଥିଲା, ବାହାଘର
ପଡ଼ୋଶୀଘରର ରତ୍ନାକର
ହୁଗୁଳି ଯାଉଥିଲା ନିଜଭିତରେ
ଯେବେ ଦେଉଥିଲା ରତ୍ନାକର
ଚୁଡ଼ି, ପାଉଁଜି, ଅତର ।

ବିନ୍ଦୁ ଅପା





ଏବେ ଷୋହଳ ବର୍ଷର
ରୂପାନ୍ତର ହେଲା, ବାହାଘର
ଯେତେବେଳେ ଏକାନ୍ତରେ
ଭେଟିଲା ଧାନକ୍ଷେତରେ
ସାଧୁମୁଖାରେ ଅସାଧୁ ରତ୍ନାକର
ଅକ୍ଷତ ଇଲାକାରେ
କ୍ଷତ ଦେଲା ବାରମ୍ବାର
ଇଚ୍ଛା ବିରୋଧରେ
ଆଘାତ ଦାନବର ।

କୋମଳ ଅଙ୍ଗରେ, ବାହାଘର
ସବୁ ଶିହରଣ ଲାଜର
ଛୁଇଁବା ପୂର୍ବରୁ
ବାସି ଗତର ଅନ୍ଧାର
ବନ୍ଧୁ ଅପା, ସହି ପାରୁନଥିଲା
ଦେହ ମନରେ ହେଉଥିବା
କୋଳାହଳ ଯନ୍ତ୍ରଣାର ।

ଦଶବର୍ଷରୁ ଷୋହଳ ବର୍ଷ
ଏକାନ୍ତ ନିଜର ଥିବା କାଚ ଆଇନା
ଭାଙ୍ଗିଗଲା ବନ୍ଧୁ ଅପାର
ହାତ ଶିରାକଟା ରକ୍ତରେ
ଜଡ଼ସଡ଼ ହେବାପରେ
ଭାବୁଥିଲା କାଚଖଣ୍ଡ
ବାହାଘରର ରଙ୍ଗ
ରକ୍ତଠୁ ବି ଭୟଙ୍କର,
ବନ୍ଧୁ ଅପାର ।

ଗଞ୍ଜାମର କବିତା ଘର, ଅଙ୍କୁଲି,

ବ୍ରହ୍ମପୁର, ଓଡ଼ିଶା



# ଫଲଗୁର ବେଦନା



ମଧୁସ୍ମିତା ମାଣ୍ଡାଙ୍ଗୀ

ଭବଥିଲ ଯାହା ସାଥେ ମିଶି ବଞ୍ଚିବ ସାର୍ ଜୀବନ
କରନେବ ଆପଣାର ସେ ଯେ ଏକା ମୋର ମାନ ଅଭମାନ
ଯାହାର ସ୍ପର୍ଶ ବନା ଅଧୁରା ଏ ଜୀବନ...
ଭବନା ମୋର ରହଗଲ୍ ଭବନାରେ
ତାଙ୍କ ସାଥେ ବଞ୍ଚିବା ତ ରହଲ୍ ବହୁଦୂରେ
ଦେଖିନାହିଁ ବହୁ ଦନୁ କଥା ବ ହୋଇପାରୁନାହିଁ ଥରେ
ହୃଦୟବେଦନା କାହାକୁ କହବ ଧର ରଖିଛ ଯାହା ମୋ ଅନ୍ତରେ...

ଥରେ ଦେଖିଦେଲେ ତାଙ୍କ ମୁଖ କାନ୍ତ
ହେଉଥିଲ୍ ମଧୁମୟ ମୋର ଗତ ପାହାନ୍ତ
ମୃଦୁସ୍ପର୍ଶ ତାଙ୍କରେ ଭରୁଥିଲ୍ ହୃଦୟରେ
ଆଶା ସେ ଯେ ଅସରନ୍ତ
ଅସରନ୍ତ ଆଶାର ମାର୍ଗରେ
ମୁଁ ତାଙ୍କ ଚଲାପଥେ କୁସୁମ ହୁଅନ୍ତ
ଆଲଙ୍ଗନ କରତାଙ୍କୁ
ଜୀବନର ସବୁ ଦୁଃଖକଷ୍ଟ ଭୁଲନ୍ତ...

ବଧିର ବଧାନ କନ୍ତୁ ଅଲଗା ଥିଲ୍ ମୋ ପାଇଁ
ଭବୁଛ ଚଲାପଥେ କୁସୁମ ବ୍ୟତୀତ
କଣ୍ଟା ସାଜଛ ମୁଁ ତାଙ୍କ ପାଇଁ
ପ୍ରେମର ଫଲଗୁ ବହ ଚାଲଛ
ଅଥଚ କୌଣସି ଶବ୍ଦ ନାହିଁ
ଅନ୍ତର ବେଦନା ବଢ଼ି ଚାଲଛ
ହେଲେ କାହାରକୁ ଗୋଚର ନାହିଁ
ହଁ ମୁଁ ଅଭଗିନୀ ବୋଧହୁଏ
ତାଙ୍କ ପାଇଁ ଗଢ଼ା ହୋଇନାହିଁ ।





# କାଦମ୍ବିନୀ



ଲଟିଲ୍ ମାଷ୍ଟର ମଞ୍ଜନ

କଦମ୍ବ ବନର ସ୍ମୃତରେ ନମଗ୍ନ
ବରହଣୀ କାଦମ୍ବିନୀ
କୁଞ୍ଜ ଲତାମାଳ ଆହ୍ୱାନ କରନ୍ତ
ଫେର ଆସଗୋ ସଜନୀ ।
ଉଜାଣି ଯମୁନା ଦୁଇକୂଳ ଖାଏ
ଗଇ ନୟନାନ୍ତେ ଅଶ୍ରୁ
ଭଲପାଇଥିଲ ପ୍ରାଣଠି ଅଧିକ
ଆଜ ହୋଇଗଲ୍ ଶତ୍ରୁ ।
ଗଇର ହୃଦୟ ଶୁଷ୍କ ମରୁଭୂମି
କହ୍ନେଇ ଜୀମୂତ ବନା
ହୃଦୟର ଗଭୀର ପ୍ରଦେଶେ ତା'ର
ପୂଜାପାଏ ସଦା କାହ୍ନା ।
ଆଜ କଣ ସେହ ମନ ମନ୍ଦିରର
ଦେବତା ଯାଇଛ ହଜ
ଗଇ ମନ ବୋଧେ ଥକ ପଡ଼ିଲାଣି
କୁଞ୍ଜବନ କଥା ହେଜ ।
ପ୍ରାଣପ୍ରିୟ ମୋର ହୃଦୟେ ଆସ୍ଥାନ
ଦେଇଥିଲ ମୁଁ କାହିଁକ ?
ବରହ ବେଦନା ଲେଖାଅଛ କବା
ଏ ବ୍ରଜବାଳୀ ପାଇଁ କ ?
ଝୁରୁଛ ଯମିନା ଝୁରଇ କଦମ୍ବ
ଯାଇଛ ସେ ଥୁଣ୍ଟା ହୋଇ
ପଲ୍ଲବତ ହେବା ସମ୍ଭବ ହୋଇନ
ଗଇ ଅଭଶାପ ପାଇ ।
କୁଞ୍ଜ ଲତାମାଳ ଅଭଶପ୍ତପ୍ରାୟ
ବସ୍ମୃତର ଗାଥା ଗାଇ
ଝୁରନ୍ତ ଅଦ୍ୟପି କଦମ୍ବ ଯମୁନା
କେବେ ଫେରବ କହ୍ନେଇ ।

ଦୂରଭାଷ - ୭୮୯୪୫୫୨୯୦୧



# ମୋ ଶେଷ କବିତା



ସ୍ୱରୂପା ମହାନ୍ତି

କବିତାର ବଗିଚାରେ ଅନେକ ଫୁଲ
କିନ୍ତୁ ହାୟ - ମୁଁ କେତେ ଅସହାୟ
ତୋଳିବାକୁ ଗଲେ ଫୁଲସବୁ କୀଟଦ୍ରଂଷ୍ଟା
ହୋଇପଡ଼ନ୍ତି....
ମୋ ଲୋଡ଼ିବା ପଣରେ ମୁଁ ବନ୍ଦୀ
ସମୟ ଶେଷ ପ୍ରାୟ...
ଆଉ କେତେଟା ମୁହୂର୍ତ୍ତ
ଆଉ ମୁହୂର୍ତ୍ତମାନେ ତୁମପାଇଁ ବ୍ୟାକୁଳ
ଚାରିଆଡ଼େ ଝଡ଼ପୂର୍ବର ନୀରବତା
ମନଭିତରେ ଅପରିସୀମ ଶୂନ୍ୟତା
ମୁଁ ଅବୁଝା ରହିଗଲି... ମୋ ଆବର୍ତ୍ତମାନରେ
ଯନ୍ତ୍ରଣାର ସ୍ୱର...
ନା ନିଜେ କିଛି ବୁଝିପାରିଲି
ନା କାହାକୁ ବୁଝେଇ ପାରିଲି
ଅସ୍ତସୂର୍ଯ୍ୟପରି ଡୁବିଯିବାର ପ୍ରକାରାନ୍ତରେ
ଭାରାକ୍ରାନ୍ତ ମନ ନେଇ ଖାଲିଯାହା ଧନ୍ଦିହେଲି
ହରେଇଦେଲି ମୋ ଭବିଷ୍ୟତ କେଉଁ ଏକ
ଔପଚାରିକତାରେ... ନଷ୍ଟ ନୀଡ଼... ଅଶାନ୍ତ ମନ
ନୈତିକତାର ଅଧପତନ...
ଆଉ ଶେଷରେ ଭିନ୍ନ ଏକ ଦୁନିଆର
ଆକର୍ଷଣ...
ମନେ ହୁଏ ସବୁ ଦୁଃଖ ଦରଦର ଅନ୍ତ ହେବ
ଜଳିବାକୁ ପଡ଼ିବନି ଆଉ ତିଳ ତିଳ ହୋଇ
ଟିକେ ଆଲୁଅ ପାଇଁ...
ନିଜକୁ ସର୍ବସ୍ୱାନ୍ତ କରିଦେଇ...





# ପ୍ରେମ ବିହଙ୍ଗ



କ୍ଷେତ୍ରବାସୀ ଜେନା

ବିହଂଗଟିଏ କରିଦିଅ ମୋତେ

ନୀଳ ଆକାଶରେ ଉଡ଼ିବି,

ଅକାଶର ସେହି ସାତଟି ରଂଗକୁ

ମୋ ପ୍ରିୟା ଦେହରେ ବୋଳିବି ।

ମାନିବିନି ମୁହିଁ ଯେତେ ଝଡ଼ଝଂଜା

ପାହାଡ଼ ପର୍ବତ ପଥ

ପ୍ରିୟା ଖୁସିହେବ ଗଭାରେ ଖୋସିବ

ଆଣିଦେବି ପାରିଜାତ ।

ସହିପାରିବିନି ତୃଷ୍ଣା, କ୍ଷୁଧାକୁ ତାହାର

ଆଣିବି ମଧୁର ଜଳ

ଗୃଖି ଗୃଖି ଆଣି ତାପାଇଁ ରଖିବି

କେତେ ମିଠା ମିଠା ଫଳ ।

ସେ ମୋହର ମନ ହୃଦର ସ୍ପନ୍ଦନ

ମୋହର ଜୀବଜୀବନ,

ପାଉକି ନ ପାଉ ଭଲ ସେ ମୋତେ

ତା ପାଇଁ ଯାଉ ଜୀବନ ।



# ବ୍ୟଥିତ ପ୍ରାଣର ସ୍ୱର



ତ୍ରିଲୋଚନ ଦାସ

ଅଗ୍ନକ ଦନେ ଟାଣିନେବ କାଳ
ଅଦେଖା ହାତରେ ତା'ର,
କେବେ ମୋତେ ନେବ କେବେ ସେ ତୁମକୁ
ଜାଣେନା ଆପଣା ପର ।

ସମ୍ପର୍କର ସବୁ ଖିଅ ଯାଏ ଛଡ଼ି
ସ୍ମୃତରେ ଅଲଭ୍ୟ ଚହ୍ନ,
ସଜଫୁଟା ଫୁଲ ମଉଳ ଯାଉଛ
ବୁଝେନା ଅବୁଝା ମନ ।
ଦୀପରୁ ସଳତା ଜଳଯାଏ ଯେବେ
ଅଭନୟ ସରେ କା'ର,
କେବେ ମୋତେ ନେବ କେବେ ସେ ତୁମକୁ
ଜାଣେନା ଆପଣା ପର ।୧ ।

ପାପ ପୂଣ୍ୟ ଯହିଁ ତଉଲ ହୁଏନା
ଲାଭ କ୍ଷତ ଭଲ ମନ୍ଦ,
କପଟ ପଶାର ଦାନା ଗୋଟି ସାଜ
ଛୁଟାଏ ହଂସାର ଗନ୍ଧ ।
ବହଳ ଅନ୍ଧାରେ ହୁଏ ପଥହରା
ବ୍ୟଥିତ ପ୍ରାଣର ସ୍ୱର,
କେବେ ମୋତେ ନେବ କେବେ ସେ ତୁମକୁ
ଜାଣେନା ଆପଣା ପର ।୨ ।

ଶ୍ରୀବହାର, ପୋ/ଜ- ଖୋର୍ଦ୍ଧା,
ପିନ୍- ୭୫୨୦୫୫, ଓଡିଶା
ଦୂରଭାଷ- ୯୮୫୩୫୩୫୦୯୫



# ସୃଷ୍ଟି ମୁଁ ବିଧାତାର



ମୁନ୍ନା ମହାପାତ୍ର

ବଚତ୍ର ତୁମ୍ଭର ସୃଷ୍ଟି ଧନ୍ୟ ହେ ଈଶ୍ୱର,
ସର୍ବ ଜୀବଙ୍କ ମଧ୍ୟରେ ଶ୍ରେଷ୍ଠ ଅଟେ ନର ।

ବୃକ୍ଷ ପାଇଁ ମୃତ୍ତିକା ହେ, ପୁଣି ଶୁଭ୍ର ନୀର,
ସର୍ବ ଧରା ବାସୀ ଅର୍ଥେ ସେ ନୀଳ ଅମ୍ବର ।

ହଂସ୍ର ପାଇଁ କ୍ଷୁଦ୍ର ପଶୁ, ପକ୍ଷୀ ପାଇଁ ଦାନା,
କ୍ଷୁଦ୍ର ପଶୁ ପାଇଁ ତୃଣ, ସୃଷ୍ଟି ତୁମ ସିନା ।

ବହଙ୍ଗଙ୍କ ବଚରଣ ଶୂନ୍ୟ ସେ ଅମ୍ବରେ
ନର ବହରନ୍ତି ପ୍ରଭୁ ତବ ପଥ ପରେ ।

ଜଳ, ସ୍ଥଳ, ଆକାଶ ଯେ ନର କର ଜୟ,
ନର୍ଭୟେ ବଚରେ ପ୍ରଭୁ ମନ ନସଂଶୟ ।

ପଶୁଙ୍କ ବହାର ଅର୍ଥେ ସେ ବନ ପର୍ବତ,
ବହରନ୍ତି ପ୍ରଭୁ ସେଥେ ହୋଇ ମନତୃପ୍ତ ।

କେଉଁ ଅର୍ଥେ ସୃଷ୍ଟି ମୋର କୁହ ଭବଗ୍ରାହୀ,
ନା' ପୁରୁଷ ନା' ମୁଁ ନାରୀ କନ୍ନର ଅଟଇ ।

ଜହ୍ନ ଓଷାରୁ ସାବତ୍ରୀ କେତେ ଯେ ପରବ,
ନାରୀଏ ପାଳନ୍ତି ଦେଇ ହୁଳହୁଳି ରବ ।

ସମ୍ମାନ ଲଭେ ପୁରୁଷ ଜନ ସମାଜରେ,
ଅରଜେ ସୁନାମ ସେ ଯେ ନାନା ସୁକର୍ମରେ ।

କେହ ବଜ୍ଞ ଜନ ବୋଧେ ସେ ଯୁଗରେ ଥିଲେ,
ଅର୍ଦ୍ଧନାରୀଶ୍ୱର ଚତ୍ର ମୋ' ଅର୍ଥେ ରଚଲେ ।





ଅର୍ଦ୍ଧନାରୀଶ୍ୱର ଯେବେ ଚନ୍ଦ୍ରପଟେ ଦେଖେ,
ପ୍ରଫୁଲ୍ଲ ମନରେ ପ୍ରଭୁ ଚନ୍ଦ୍ରକୁ ପରଖେ ।

ନିର୍ଦ୍ଧାରିତ ଉତ୍ସବରେ ସ୍ମରନ୍ତି ଜଗତ,
ସନ୍ତାନର ଜନ୍ମୋତ୍ସବେ କରନ୍ତି ସ୍ୱାଗତ ।

ନବ ଦଂପତି ଯେ ମୋ'ଠୁଁ ଘେନଇ ଆଶିଷ,
ଏହା ଦେଖି ମନ ମୋର ଅତି ଯେ ସନ୍ତୋଷ ।

ସସମ୍ମାନେ ବଞ୍ଚିବାକୁ ବଳିଥାଏ ମନ,
ବଞ୍ଚିବି ମୁଁ ସମାଜରେ ରଖି ମୋ' ସମ୍ମାନ ।

ଆଶା ଅଛି ଅଫୁରନ୍ତ ଲଙ୍ଘିବି ସାଗର,
ସାର୍ଥକ ହେଉ ଜୀବନ, ଏ ଜନମେ ମୋର ।

ଜନ ସେବା, ଦେଶ ସେବା, ଶିକ୍ଷକତା ପୁଣି,
ଅସାଧ୍ୟକୁ ସାଧି କରି ପାରିବି ମୁଁ ଜାଣି ।

ଅନେକ କ୍ଷେତ୍ରରେ ଅଛି ଆମରି ସୁନାମ,
ସୁଲଭ ହୁଏ ମୋ' ଦେଇ କେତେ ଯେ ଦୁଷ୍କର୍ମ ।

ସର୍ବ ଜୀବ ମଧ୍ୟେ ଶ୍ରେଷ୍ଠ, ଯେଉଁ ଜୀବ ସାର,
ମନୁଷ୍ୟ ମୋ' ଜନ୍ମଦାତା ସେଇ ଜାତି ମୋର ।

ଗୁଣପୁର, ରାୟଗଡ଼



# ଅଦିନରେ ତୁମେ



ଅବନୀ ପାଣି

ଭିଜିଥିଲି ଏକ ଅଦିନ ବର୍ଷାରେ
ତୁମ ପ୍ରେମସ୍ପର୍ଶ ପାଇ
ଆଜି ମୁଁ ଭିଜୁଛି ମୋ ଲୁହ ବର୍ଷାରେ
ଯେବେ ଗଲ ତୁମେ ଦୂରେଇ ।

ନାଚିଥିଲି ମୁଁ ଅଦିନ ବସନ୍ତେ
ତୁମ ପ୍ରେମ ସ୍ୱର ଲୟ ତାଳେ
କାହିଁ ଥକିପଡ଼େ ଆଜି ସେହି ପାଦ
ତୁମେ ମନେପଡ଼ ଯେତେବେଳେ ।

ଦୀପ ଜାଳିଥିଲି ଅଦିନେ ଉଆଁସେ
ତୁମ ମନ ସଳିତାକୁ ନେଇ
କାହିଁ ପୋଡ଼ିଦେଲ ମୋ ମନ ସହର
ପାରୁନି ଶାନ୍ତିରେ ଶୋଇ ।

ଫଗୁ ଖେଳିଥିଲି ଅଦିନ ବୈଶାଖ
ଯେବେ ମୋତେ ଛୁଇଁଥିଲ
ଆଜି ବି ଅସହ୍ୟ ଲାଗେ ସେ ବୈଶାଖ
କାହିଁ ଗୁଡ଼ି ଗୁଲିଗଲ ।

ଏମିତି ଅଦିନ ନ ଆସୁ ସପନେ
ଆଉ କାହା ଜୀବନରେ
ଲାଗେ ବିଷମୟ ପ୍ରତିଟି ମୁହୂର୍ତ୍ତ
ମରିମରି ବଞ୍ଚିବାରେ ।

କଣିହା, ତାଳଚେର
ଓଡ଼ିଶା





# ରାତର ସାଥୀ



ଚିନ୍ମୟ ରଞ୍ଜନ ମିଶ୍ର

ଦିନ ସରେ ଏଠି ରାତ ଆସେନି
ଆସେ, ଝଲସା ଆଲୁଅର ଦିନ,
ଆଖିରେ ଆଖିଏ ଲୁହ
ପେଟରେ ଥିବା ଭୋକ
ଅଥୟ ହେବାକୁ ଲାଗେ;
ଅସୁମାରୀ ଯନ୍ତ୍ରର ଶବ୍ଦ
ପାଦ ନାଚି ଉଠେ;
ମନ ନଥାଇ ବି
ଆଖି ଗାଏ ଗୀତ,
ଓଠ କରେ ଆଳାପ
ବନ୍ଧୁତ୍ୱ ଜମାଏ ଭୋକ ସହ ଶୋଷର;
ଜାଗର ସହ ତନ୍ଦ୍ରାରେ ।
ଥକି ପଡ଼େନି ହାତ ବଞ୍ଚାଇ
ରକ୍ତର ଶୋଷଣକୁ ଫିଙ୍ଗି
ଗରୀବତାର କଲମ;
କରିବାକୁ ଗୋଟିଏ ରାତର ସାଥୀ ।
କାହା ରାତ ଏଠି ରଙ୍ଗୀନ
ଝିଲମିଲ ଆଲୁଅରେ
କିଏ ପୁଣି ଜଳୁଥାଏ
ଫିକା ଅଧା ଲିଭା ବତୀରେ;
ଦଗ୍ଧ ହୁଏ ଆତ୍ମା;
ଜୀବନର ଉଷୁମ ନିଆଁ
ଓ ବୁନ୍ଦା ବୁନ୍ଦା ରକ୍ତରେ ।





ସ୍ୱପ୍ନ ଦେଖିବାକୁ ବେଳନାହିଁ
ଅଧେ ଲୁହ ବାକି ସବୁ କୋହ
ଥରେ ତ ଜାଗାମିଳିଲେ
ଦେଖିବ ତ ନିଜପାଇଁ ।
ରାତିପରି ଗୁଳିଯାଆନ୍ତି
ସିନ୍ଦୁର୍ ଫାଟିବା ଏକା;
ଉଇଁ ଆସିଥିବା କୁଆଁତାର୍
ହଠାତ୍ କାଲେ ଆସିବ ଦିନ
ଚିହ୍ନା ପଡ଼ିବ କାଲି ରାତିର ପାପ ।
ଅପଦସ୍ତ କରିବ ସାନ୍ନିଧ
ରଙ୍ଗ ଉଡ଼ିଯାଇଥିବ ସବୁ
ଜମାଥିବ ଭଲଲୋକ
ଦୁନିଆଁର ଭିଡ଼ରେ;
ଅଚିହ୍ନା ସମସ୍ତେ
ସାଥି ଓ ରାତି,
ଅଜସ୍ର ପ୍ରଶ୍ନଚିହ୍ନ
ଗୁଡ଼ିଯାଇଥିବ
ସାଥୀ ରାତିର ନା'
ରାତି ସଙ୍ଗେ କିଏ ସାଥୀ
ନା' ପୁଣିଥରେ ଖୋଜାପଡ଼ିବ
ଯେବେ ଆସିବ ରାତି ।

ରାୟସିଙ୍ଗ୍‌ପୁର୍ ଶାସନ, ପିତଳ
ଗଞ୍ଜାମ, ଓଡ଼ିଶା





# କେହ୍ନ ନଥିବ



ମିତୁ ପଟ୍ଟନାୟକ

ଅପରାହ୍ନର ଛାଇଟିଏ ମୁଁ
ଅସ୍ତଗାମୀ ସୂର୍ଯ୍ୟ ସହ
ଅପସର ଯିବ ଧିରେ ଧିରେ
ବାକି ରହିଯାଇଥିବ
ଆପଣେଇବାକୁ ଆଞ୍ଜୁଳାଏ ଆକାଶ
ପବନର ପାଖୁଡ଼ାରେ
ବୋଳିବାକୁ ଥିବ
ପାଟଳ ରଙ୍ଗର ପାଉଁଶ ।
ଅଥଚ,
ଅନ୍ଧାରରେ ଉଦରସ୍ତ କରୁଥିବ ମତେ
ଶେଷହୀନ ଶୂନ୍ୟତାର ଶୋଷ ।

ନା ମୁଁ, ନା ମୋ ଛାଇ
କେହିବ ନଥିବେ କାହାର
କେବଳ ଅନ୍ଧକାର ହିଁ ଥିବ
ଏକମାତ୍ର ଦାବୀଦାର ମୋର
ମୋ ପର ମୋ ଛାଇର ।

ବ୍ରହ୍ମପୁର, ୭୬୦୦୧୦
ଗଞ୍ଜାମ, ଓଡ଼ିଶା



# ମୁଁ ହିଁ ଶ୍ରେଷ୍ଠ



ନରେଶ କୁମାର ବେହେରା

ପିଟୁଥାଏ ନିଜର ଡିଣ୍ଡିମ
କହୁଥାଏ ମୁଁ ହିଁ ଶ୍ରେଷ୍ଠ ଏଠି
ମୁଁ ପରା ଅଟେ ସେହି ବଙ୍କ
ଦେଖିନ କି ଅମୁକ ପୃଷ୍ଠାରେ
ମୁଁ ଅଟେ ଭାରି ଧୂରନ୍ଧର
କରେ ଖିଅର ପ୍ରତିଟି ଲେଖାର
ଆଜିର ଏ ଇଂରାଜୀର ପୀଢ଼ି
ଲେଖି ଅଶୁଦ୍ଧି ଅନେକ ଥର
ଚାଲିଯାଏ ହୋଇ ସେ ତତ୍ପର
ଜାଣିନି ସେ ମୁଁ ଜଣେ ଶ୍ରେଷ୍ଠ
ଜାଣିନି ସେ ସାହିତ୍ୟ ପସରା
ଲେଖିଦେଇ ଦୁଇଧାଡ଼ି ଗୀତ
ଏଠି ପରା ଅଦଳ ବଦଳ
ଆଜି ଯଦି ମୋର, ତ
ସାବଧାନ ଆଜିର ଏ କବି
ରହିବନି ଅସ୍ତିତ୍ୱ ଏଇଠି
ସାହିତ୍ୟ ତ ଏଠି ରାଜନୀତି
ନ ପାରିଣ ଚାଲି ଖଣ୍ଡାଧାରେ

ବଜାରେ ଆଜିର କବି
ଜାଣିନ କି ମୋତେ ତୁମେ ସଭି ?
ପାଇଅଛି କେତେ ଟ୍ରଫି
ଛପିଅଛି ମୋର ସୁନ୍ଦର ଛବି ?
ବାରିବାକୁ ଭୁଲ ସଭିଙ୍କର
ଜାଣିନ କି ମୁଁ ପରା ବୀର !
କହେ ନିଜକୁ କବି ଏ ଯୁଗର
ନ ମାନେ ସେ ମୋର କଥାସାର ।
କରିଦେଇ ମୋତେ ଆଜି ପର
କରିପାରେ ସବୁ ଛାରଖାର ।
ହେଉନି ସେ କବିତା ଆସର
ବୋଲାଉଛି କବି ଯେ 'ସାଗର' ।
ହେଉଥାଉ ଆମ ପୁରସ୍କାର
କାଲି ଆଉ କାହାର ।
ଚାରିଖଣ୍ଡେ ଚାଲି ତୁ ହାତେ ମାପି
ଆମ ହାତେ ଅଛି ଚାବିକାଠି ।
ଫେରିଛନ୍ତି କେତେ ଯେ ହସ୍ତୀ
ହଜେଇ ନିଜର ଅତିଗତି ।



# ପ୍ରୀତର ଗଜଲ



ଜ୍ୟୋତ୍ସ୍ନା ତ୍ରପାଠୀ

ଆସକ୍ତ ଓ ମୂର୍ଚ୍ଛାର ଗଭୀର ଗର୍ତ୍ତରେ
ଉବୁଟୁବୁ ହୋଇ ଗ୍ରହେଁନା ମୁଁ ଉପଭୋଗ
ଲୋଡ଼େନ ଫୁଲର ଗେଷଣୀ
ଗଜରା ଚନ୍ଦନ ଦୀପ ଧୂପ ଓ ନୈବେଦ୍ୟ
ବନ୍ଦାଅନ ମୋତେ ଦେଇ ଦୁର୍ବାକ୍ଷତ
କରନ ଷୋଡ଼ଶଉପଗ୍ରର ପୂଜା
ବଜାଅନ ଘଣ୍ଟଘଣ୍ଟା କ କାହାଳୀ
ଭେରୀ ତୁରୀ ବାଜା ଓ ମର୍ଦ୍ଦଳ
ମୁଁ ନୁହେଁ ମୃଣ୍ମୟୀ ଦେବୀ
ଆଦମ ଯୁଗରୁ ସ୍ନେହ କାଙ୍ଗାଳନୀ ନାରୀଟିଏ
ରକ୍ତ ମାଂସଧାରୀ ଜୀବନ୍ତ ପ୍ରତମା ।
ମୋ ଅସ୍ଥିମଜ୍ଜା, ରକ୍ତ ଓ ସ୍ୱେଦରେ ଭର୍ତ୍ତି
ସ୍ନେହ, ପ୍ରେମ ଓ ଆପଣାର ପଣ ।
ଉଙ୍କିମାରେ ମୋ ଭତରେ ଅହରହ
ଜନନୀ, ଜାୟା ଓ କନ୍ୟାର ଭାବ ।
ସ୍ନେହର ଅଫୁରନ୍ତ ଫଲଗୁ ଦେଇ ମୋତେ
ଆଶ୍ଳେଷି ନଅ ନବଡ଼ ବନ୍ଧନେ
ତୁମ ସୁଖ ଓ ଦୁଃଖରେ ମୋତେ ଭାଗିଦାର କର ।



ହୁତୁ ହୁତୁ ନଆଁରେ ଜଳାଅନ ମୋତେ

ତମପ୍ରତ ମୋ ଆସକ୍ତି ଦଅନ୍ତୁ ଡାହାଣୀର ସଂଜ୍ଞା

ଡାହାଣୀ ହୋଇ କାହା ରକ୍ତ ମୁଁ ଶୋଷିନ

ଦୁଃଖ ଯନ୍ତ୍ରଣାରେ କାହାକୁ ଅତଷ୍ଠ କରନ

ମୁଁ ଗୃହେଁ ଝର ଝର ଝରଯାଉ ସ୍ନେହପ୍ରୀତର ଝରଣା

ଦୂରହେଉ ସନ୍ଦେହ, ବଦ୍ୱେଷ, ବତୃଷ୍ଣା

ଭାଇରସ୍ ପର ନ ବ୍ୟାପୁ ଘୃଣା ପରବାରରେ

ଅଫିସରେ ସୀମାନ୍ତରେ ଓ ଗୃହଆଡ଼େ

ନ ହେଉ ବଶୃଙ୍ଖଳା କ ଛଳନାର ଖେଳ

ହାତରେ ମିଶାଇ ହାତ, କାନ୍ଧରେ ମିଶାଇ କାନ୍ଧ

ହଜଯିବା ଭଜଯିବା ସଭଏଁ ପ୍ରେମରସରେ

ଉନ୍ମୋଚନ କର ଆମ ଚେତନାର ଗବାକ୍ଷ ।



# ମାଆ



ସନମ ଦେବୀ

ଦୁନଆରେ ଖୁସିଦନ ଆଜ ତ ଆସିଛି

ମା' ଆଜ ଧରଣୀରେ ପାଦଯେ ଥାପିଛି

ଶରତର କାଶତଣ୍ଡୀ ଆଜ ଯେ ହସୁଛି

ମା'କୁ ସୁନାର ଢେଉ ସ୍ୱାଗତ କରୁଛି - ୧

ମା' ପରଶରେ ଧର୍ ଖୁସିରେ ହସୁଛି

ପୂଜା ମଣ୍ଡପେ ମା'କୁ ଦେଖି ମନ ନାଚ ଯାଉଛି

କଏ ବଡ଼ କଏ ସାନ ଭେଦଭବ ନାହିଁ

ମା' ପାଶେ ଆମେ ପର୍ ଭଇଭଉଣୀ - ୨

ମୁଁ ପର୍ ହୀନ ମୂର୍ଖ ପୂଜା ଜାଣିନାହିଁ

ଗୀତା, ଭଗବତ ପୁଣି ମୁଁ ପଢ଼ିନାହିଁ

ତଥାପି କରୁଛି ମା' ତୋତେ ବନ୍ଦନା ମୁଁ ଆଜ

ଦୟାକର ଘେନ ତୁମେ ମୋହର ପ୍ରଣତ - ୩



# କିଏ ପାରେ ଜାଣି



ସଂଘମିତ୍ରା ରାଏଗୁରୁ

ମା'...

ଏ ସନ ବ

ଆସିଛ ତୁମେ

ନଳୀମାର ଧଳା ଧଳା ବଉଦଖଣ୍ଡରେ

କାଶତଣ୍ଡୀର ନୀରବ ହସରେ

ଶରତର ନର୍ମଳ, ମଗ୍ନ ପ୍ରଭାତରେ ।

ଘଣ୍ଟ, ଘଣ୍ଟା, ଧୂପ, ଦୀପ, ନୈବେଦ୍ୟ ସହ

ହୋମାଗ୍ନିର ପବତ୍ର ମନ୍ତ୍ର ଉଚ୍ଚାରଣ,

ପୁଣିଥରେ ନରାଶ ହୃଦୟରେ

କରଛ ଆଶାର ସଂଚାର ।

ସତରେ କଣ ଏଥର

ଦୀର୍ଘଦନର

ଅଭଳାଷ ପୂର୍ଣ୍ଣ ହେବ

ସଂସାରରୁ ଅସୁରଙ୍କ

ଅସ୍ତିତ୍ୱ ହଟିବ ?

ସବୁର ମନରେ ହେବ





ସ୍ନେହ, ଶ୍ରଦ୍ଧା, ପ୍ରେମର ବୃଷ୍ଟି,

ନିଶ୍ୱାସ ମାରିବ ଶାନ୍ତିରେ ଏ ସୃଷ୍ଟି ।

ନା ପ୍ରତିଥର ପରି

ଏମିତି

ମିଛମାୟା ଦେଖେଇ

ଜଳଗର୍ଭରେ ବିସର୍ଜନ ନେବ ?

ଧାରେ ଆଲୁଅର

ଅଭିପ୍ସା ଜଳାଇ

ଅପସରି ଯିବ ?

କେଜାଣି

କଣ ଭାବି ଆସିଛ ଏଥର

କିଏ ପାରେଜାଣି

ଗୁମର ତୁମର ।

ରାୟପୁର, ଛତିଶଗଡ଼



# ମୋ ସହର



ଶିଉଲାଲ ମହନ୍ତ

ମୋ ସହରରେ
ମୁଁ ଆଜ ବେସାହାର୍
ଅସହିଷ୍ଣୁତା ମାଡ଼ିବସିଛି
ମୋ ଗ୍ରନ୍ଥର ସବୁ ବଖର୍;
ଗ୍ତ ଘନେଇଲେ କିଏ ଜଣେ
ଲାଲ ସଲାମ ବୋଲି
ମୋ ଘର ସାମ୍ନା କାନ୍ଥରେ
ଲେଖିଦେଇ ଯାଏ ।
ମୋ ମନରେ ସଦାବେଳେ ଏଠି
ଆଶଙ୍କାର ବିଷ ଚରୁଥାଏ ।
ମୋ ପଛରେ ରଚିଯାଏ ଏଠି
ଅଭେଦ୍ୟ ଚକ୍ରବ୍ୟୁହ...
ମାଡ଼ ହେଉଥାଏ ସବୁବେଳେ ଏଠି
ଶବ୍ଦଭେଦୀ ତୀର,
ବିଷ ଏଠି ସଂଚରୁଥାଏ ମାଟିରୁ ଆକାଶ ।
ପାହାଡ଼ ଜଙ୍ଗଲ ଉଜୁଡ଼ିଯାଏ
ସକାଳର କାକରବୋଳା ଦୁବଘାସ ।
ଆକାଶ ପାତାଳ
ମନ୍ଦିର, ମସଜିଦରେ
ବଢ଼ିଗଲେ ରକ୍ତର ଭୋକ,
ଏଠି ପ୍ରେମ ହେଉକି ସହବାସ
ସବୁଠି ବୋମାର ଆତଙ୍କ ।
କିଏ ବା ବୁଝିବ,
ଏ ସହରର ଦୁଃଖ ?
ଏଠି ସବୁ ପର,
ସବୁ ବୁଝୁଥିବା ଅବୁଝା ଲୋକ ।



# କନ୍ୟାରତ୍ନ !



ସରୋଜନୀ ସାହୁ

କନ୍ୟାଟିଏ ମୁଁ କନ୍ୟାଟିଏ
ଜନନୀ, ଭଗିନୀ, ଜାୟା ରୂପରେ ମୁଁ ଗ୍ରହଣୀୟ
କନ୍ୟାରୂପରେ କାହିଁକି ନୁହେଁ
ଝିଅଟିଏ ବୋଲି ହତାଦର କରି ଦେଉଛନ୍ତି ଫିଙ୍ଗି ମୋତେ
ମୋ ବିନା ତ ସୃଷ୍ଟି ସମ୍ଭବ ନୁହେଁ
ସମାଜ ଜାଣି ବି ଅଜଣା ହୁଏ
ମୁଁ କେବଳ ପୁରୁଷର ଶଯ୍ୟାସଙ୍ଗିନୀ ନୁହେଁ
ତା’ସହ ମୋର ନିବିଡ଼ ସମ୍ପର୍କ
ସହଧର୍ମିଣୀ, ସହକର୍ମିଣୀ ସହଗାମିନୀ ଯାଏ
କନ୍ୟାରତ୍ନ ବୋଲି ସଭାରେ ଭାଷଣ ରୀତିମତ ଶୁଣି
କାନ ମୋର ହୁଏ ବଧିର
ଜାଣେନା କାହିଁକି ମୋ ଉପସ୍ଥିତ କରେ
ଆଜି ସମସ୍ତଙ୍କୁ ଅଧିର
ମୋ’ପରି କନ୍ୟାମାନେ ଦିନେ କରିଯାଇଛନ୍ତି
କେତେ ବଡ଼ ବଡ଼ କାମ
ସେଥିପାଇଁ ଆଜି ଇତିହାସେ ତାଙ୍କ
ସ୍ୱର୍ଣ୍ଣାକ୍ଷରେ ଅଛି ନାମ
ଗାର୍ଗୀ, ମୈତ୍ରେୟୀ, ପରି କନ୍ୟାମାନେ
ରଚିଥିଲେ ବେଦ ଉପନିଷଦ
ସାବିତ୍ରୀଙ୍କ ପରି ମହାନ ଝିଅ
ଯମଙ୍କୁ କରିଲେ ବୁଦ୍ଧିରେ ପରାସ୍ତ
ଇତିହାସ ବର୍ଣ୍ଣିତ ଅହଲ୍ୟାବାଈ ମୀରାବାଈ ଦୁର୍ଗାବତୀ
ଲୀଳାବତୀଙ୍କ ଗଣିତସୂତ୍ର ହଜାଏ ବଙ୍କଙ୍କ ମତ
ଭଗିନୀ ନିବେଦିତା ମାତା ରମାଦେବୀ
ଆଣିଥିଲେ ଦେଶେ ଜାଗରଣ
ତାଙ୍କ ପାଇଁ ଆମେ ସଭିଏଁ ଆଜି ପାଇଛେ
ଆମର ଦେଶ ସ୍ୱାଧୀନ ।





କୋକିଳକଣ୍ଠୀ ଲତାଙ୍କର ଆଜ ସମକକ୍ଷ କେହି ନାହିଁ
ସ୍ୱୟଂ ସରସ୍ୱତୀ ଅବତାର ନେଇ ଜନ୍ମ ନେଇଛନ୍ତି ସେହି
କଳ୍ପନା ଗୃହ୍ଲା, ସୁନୀତା ୱିଲିୟାମ୍
ଏ ଦେଶର ଝିଅ ହୋଇ
ମହାକାଶରେ ଅବତରଣ କଲେ ପୁରୁଷଙ୍କ ଆଗେ ଯାଇ
କେତେ ବଖାଣିବ କନ୍ୟାଙ୍କ ଗୁଣ ନାହିଁ ତାଙ୍କ ପଟାନ୍ତର
ରାଜନୀତିଠାରୁ ପର୍ବତାରୋହଣ ଜିମ୍ନାଷ୍ଟିକ୍
ପର୍ଯ୍ୟନ୍ତ ସବୁଥିରେ ଆଗୁସାର
ତଥାପି ଆଜ ସମାଜ କାହିଁକି କରୁନି ମୋତେ ଗ୍ରହଣ
ପୃଥିବୀ ଆଲୋକ ଦେଖିବା ଆଗରୁ କରୁଛି ହତ୍ୟା ଭ୍ରୂଣ
ଗର୍ଭରେ ଥିଲେ ମୃତ୍ୟୁର ଭୟ ଗର୍ଭ ବାହାରେ ଇଜ୍ଜତ ଯାଏ
କେମିତି ବଞ୍ଚିବ କୁହ ଝିଅ ଜୀବନଟା କେବଳ ଦୁର୍ବିସହ ହୁଏ
ହେ ବୁଦ୍ଧିଜୀବି ପୁରୁଷ ସମାଜ କର ମୋତେ ଅଙ୍ଗୀକାର
ଅବଳା ମୁଁ ନୁହେଁ ଦୁର୍ବଳା ବି ନୁହେଁ
ତେଜ୍ୟା ବି ନୁହେଁ, ଭୋଗ୍ୟା ମୁଁ ନୁହେଁ
ମୁଁ କନ୍ୟାରତ୍ନ ମାଆଟିଏ ଆଗାମୀ କାଲର ।

ଦିଗପହଣ୍ଡି ମୁଖ୍ୟ ରାସ୍ତା
ପୋଷ୍ଟ ଅଫିସ ପାଖ
ଦିଗପହଣ୍ଡି, ଗଞ୍ଜାମ,
ଓଡ଼ିଶା - ୭୬୧୦୧୨





# ପ୍ରେମର ଫଲଗୁ



ସରୋଜିନୀ ସାହୁ

ଅବ୍ୟକ୍ତ ଭାବାବେଗର
ନିରବ ପରିପ୍ରକାଶ ହିଁ ପ୍ରେମ
ଯାହା ଥାଏ ମାଆର ମମତାରେ
ବାପାଙ୍କ ଅନୁଶାସନରେ
ଭଗିନୀର ସ୍ନେହରେ
ଭାଇର ଆପଣାପଣରେ
ପୁଣି ପ୍ରିୟାର ଆନତ ଆଖିରେ
ଦୃଶ୍ୟମାନ ପୃଥିବୀରେ
ପ୍ରେମ
ସମ୍ପର୍କର ଅଦୃଶ୍ୟ ସେତୁଟିଏ
ଯୋଡୁଥାଏ ଦୁଇକୂଳ - ଦୁଇ ମନ
ଶାଶ୍ୱତ ଅନୁଭବରେ
ପ୍ରେମ ଏକ ନିଆରି ଋତୁ
ପ୍ରଚ୍ଛନ୍ନ ଆବିର୍ଭାବରେ ଯା'ର
ଡହ ଡହ ଖର୍ ଥୁରୁଥୁରୁ ଜଡ଼ତା ଭିତରୁ
ଉତୁରି ଆସୁଥିବା ମଳୟର କୋମଳ ସ୍ପର୍ଶଟିଏ
ଏକାକାର ହେଉଥାଏ ଗ୍ରୀଷ୍ମ ବର୍ଷା ଶୀତ
ପୁଣି ସବୁ ମୁମୂର୍ଷୁ ମୁହୂର୍ତ୍ତ ଜୀବନ୍ୟାସ ପାଉଥାଏ
ପ୍ରେମର ଅନନ୍ୟ ସ୍ପର୍ଶରେ
ଏ ସଂସାରରେ ପ୍ରେମର ଫଲଗୁ ବହୁଥାଏ
ନିରନ୍ତର
ପ୍ରଲମ୍ବିତ ଅସୀମ ଦୂରତା ଟପି
ଛୁଇଁବାକୁ ସଂପର୍କର ହାତ
ଏକ ପରେ ଏକ ।

ଦିଗପହଣ୍ଡି ମୁଖ୍ୟ ରାସ୍ତା, ପୋଷ୍ଟ ଅଫିସ ପାଖ
ଦିଗପହଣ୍ଡି, ଗଞ୍ଜାମ, ଓଡ଼ିଶା - ୭୬୧୦୧୨





# ତୁମ ଲାଗି ଗୀତ



ଆଶୁତୋଷ ମେହେର

ଫୁଲର ହସେ

ବମୋହତ ମୁହିଁ

ପ୍ରେମିକ ଯାଇଛି ସାଜ;

ଫୁଲର ମହକେ

ମତୁଆଲା ହୋଇ

ସପନେ ବୁଡିଛି ଆଜ ॥

ଫୁଲର ରଙ୍ଗେ

ରଙ୍ଗିଲା ସାଜଛି

ଲେଖୁଛି କବତା ଏହ;

ଖୋଜୁଛି ତୁମକୁ

ପ୍ରେୟସୀ ଆଗୋ ମୋ

ନ କହ ଲୁଚଛ କାହିଁ ?????

୫୪,ଆର୍ଯ୍ୟପଲ୍ଲୀ

କଟ୍ ଛକ, ପଟିଆ

ଭୁବନେଶ୍ୱର ୭୫୧୦୨୪



# ଆଖିମୋର ଈର୍ଷ୍ୟାକରେ



ସ୍ନେହପ୍ରଭା

ଆଖି ମୋର ଈର୍ଷାକରେ
ମୋ ଓଠକୁ,
କାରଣ ସେ କଥା ଦେଇପାରେ
ତମକୁ ।
ଆଖି ମୋର ଈର୍ଷାକରେ
ମୋ ହୃଦୟକୁ,
କାରଣ ସେ ରଖିପାରେ ନିଜ ଭିତରେ
ତୁମକୁ ।
ଆଖି ମୋର ଈର୍ଷାକରେ
ମୋ ହାତକୁ,
କାରଣ ସେ ଛୁଇଁପାରେ
ତମକୁ ।
ଆଖି ମୋର ଈର୍ଷାକରେ
ମୋ ମନକୁ,
କାରଣ ସେ ମନେ ପକାଇପାରେ
ତମକୁ ।
ଆଖି ମୋର ଈର୍ଷାକରେ
ମୋ ଶିରପ୍ରଶିରକୁ,
କାରଣ ସେ ଅନୁଭବ କରିପାରେ
ତମକୁ ।
ଆଖି ମୋର ଈର୍ଷାକରେ
ମୋ ଦେହକୁ,
କାରଣ ସେ ଅପେକ୍ଷା କରିପାରେ
ତୁମକୁ ।
ଆଖି ମୋର ଈର୍ଷାକରେ
ମୋ ଆଖିକୁ,
କାରଣ ସେ ଦେଖିପାରେନି
ତୁମକୁ ।



# ମୋ ପ୍ରଶ୍ନ (ରାବଣ)



ଅଜତ ସାବତ

ମୁଁ
ବ୍ରାହ୍ମଣ, ବଜ୍ଞ, ପଣ୍ଡତ
ମୁଁ
ବ୍ରହ୍ମାଙ୍କ ବଂଶଜ
ବଶ୍ରବା ଅଂଶଜ
ମୁଁ
ଗୋଟିଏ ନଷ୍ଟ
ଚତ୍ର ଓ ଚରତ୍ର
ମୋ ପରଚୟ
ମୁଁ
ରାବଣ
ତ୍ରେତୟା ଯୁଗର ।

ମୁଁ
ମାନୁଛ
ମୁଁ
କ୍ରୋଧୀ, ପାପୀ, କପଟୀ
ଦୂରଗ୍ରହୀ, ଅହଙ୍କାରୀ
ପ୍ରବଳ ପ୍ରତାପୀ ।

ଭୟଙ୍କର ରୂପ
ବକଟାଳ ହସ
ପୁଞ୍ଜିଭୂତ
ମୋ ଭତରେ ।

ଗୋଟିଏ ରଣହୁଙ୍କାରେ
କମ୍ପାଇପଡ଼େ





ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ
ଦୋହଲ୍ଇ ଦେଇପାରେ
ମନ ଆତ୍ମା, ର୍‌ଣୀ ହଂସପୁର
ଏ ସାର୍ ସଂସାର,
କ୍ଷଣକରେ
ଭଙ୍ଗିଦେଇପାରେ
କେତେ କେତେ ମନର ମିନାର
ମୁହୂର୍ତ୍ତକେ
ଜାଳ ପୋଡ଼ିଦେଇପାରେ
କାହାର ସୁବର୍ଣ୍ଣ ସକାଳ ।

କନ୍ତୁ
ଆଜ ମୋର
ପରଚୟ ଓ ପରସ୍ଥିତ
ବଦଳ ଯାଇଛ ।

ମୁଁ ଜାଣିନ
ମୋ କର୍ମ
ଅବା ନୀୟତର ନୟମ
ଅଥବା
ମୋ
ପ୍ରାରବ୍ଧ କ ପ୍ରାୟଶ୍ଚିତ ଲାଗି
ଆଜ ମୋତେ ଜାଳବାକୁ ଚଳଚଞ୍ଚଳ
ସହସ୍ର ସହସ୍ର
ହାତ ଓ ହତଆର ।

ସେଇ ତ୍ରେତୟା ଯୁଗରୁ
ଆଜ ପର୍ଯ୍ୟନ୍ତ
ମୁଁ କେବଳ
ଅପହରଣର ଦୋଷରେ ଦୋଷୀ
କନ୍ତୁ ସେହ ସମୟରୁ



ଆଜି ପର୍ଯ୍ୟନ୍ତ
ବସ୍ତ୍ର ହରଣ ଓ ଆହୁରି
ଅନେକ ଧର୍ତ୍ତବ୍ୟ ଦୋଷରେ
ଦୋଷୀମାନେ
ବଞ୍ଚି ଚାଲିଛନ୍ତି
ଆଉ
ସେହି ମହିଷା, ଦୁଃଶାସନ ମାନେ ହିଁ
ମୋତେ ଜଳାଇବାପାଇଁ
ଉଦ୍ୟତ ହେଉଛନ୍ତି ।

ହେଲେ ସେଥିପାଇଁ
ମୋର ଦୁଃଖନାହିଁ ।
କିନ୍ତୁ
ଆସାମୀର ଶେଷ ଇଚ୍ଛାପରି
କେବଳ ଥରୁଟିଏ, ମୋତେ ଜଳାଇବା ପୂର୍ବରୁ
ମୋତେ ମୋ ପ୍ରଶ୍ନର
ଉତ୍ତର ଦେଇଦିଅ ।

ଆଜି ଏତିକି ମିନତୀ ମୋର
ମୋତେ ଜଳାଇବା ପୂର୍ବରୁ
ଥରୁଟିଏ ନିଜକୁ ପରଖିନିଅ
ଆଉ ପଚାର
ତୁମେ କଣ ?
ଆଜି ନିଜକୁ ବଦଳିପାରିଛ ?
ତୁମେ କଣ
ପ୍ରଭୁ ଶ୍ରୀରାମଙ୍କ ଚରିତ୍ର
ନିଜ ଭିତରେ ରଖିପାରିଛ ?
ତୁମେ କଣ
ତାଙ୍କ ପରି ମଣିଷଟିଏ
ହୋଇପାରିଛ ?
ତୁମେ କଣ





କେହି କହିବା ଆଗରୁ
କେହି ମାଗିବା ଆଗରୁ
ଅନ୍ୟର ଇଚ୍ଛା ଓ ଆଦର୍ଶ
ପାଇଁ ନିଜର ସର୍ବସ୍ୱ
ତ୍ୟାଗ କରିପାରିଛ ?
ତୁମେ କଣ
ନିଜ ଭିତରର
ଇର୍ଷା, ଦ୍ୱେଷ, ସ୍ୱାର୍ଥ, ଲୋକ
ମୋହ ମାୟା
ସବୁକିଛି ଛାଡ଼ି ଦେଇପାରିଛ ?

ଆଜିର ସମାଜରେ
ମର୍ଯ୍ୟାଦାପୁରୁଷୋତ୍ତମ ରାମଙ୍କ ପରି
ମଣିଷଟିଏ
ହୋଇପାରିଛ ?

ଯଦି ନା...
ତେବେ ଧିକ୍କାର
ତୁମ ପୁରୁଷତ୍ୱକୁ
ବିନା ଅଧିକାରରେ
ବିନା ଯୋଗ୍ୟତାରେ
ହଜାର ହଜାର
ଲୋକଙ୍କ ଗହଣରେ
ମୋତେ ବାନ୍ଧି
ବାରମ୍ବାର, ବାରମ୍ବାର
ଏପରି ଜଳାଇବା
କଣ ସମୀଚୀନ ?

ଆଉ ଯଦି
ହଁ....
ତେବେ ଅବଲମ୍ବେ





ଜଳାଇ ଦଅ ମୋତେ
ଲଗିଯାଉ ନଆଁ
ମୋ କାୟା ଓ ଛାୟାରେ
ମୋ ଚତ୍ର ଓ ଚରତ୍ରରେ ।

ଆଉ ମୁଁ ବ
ସଦାସର୍ବଦା ପ୍ରସ୍ତୁତ ଅଛ
ଏପର ଭବରେ
ପ୍ରଭୁ ଶ୍ରୀରାମଙ୍କ ହାତରେ
ଜଳବାକୁ
କେବେ ଠୁଁ
କେଉଁ ଅନାଦ କାଳରୁ ।

ଆଉ
ମୋ ପାଉଁଶତଳୁ
ଆଜ ଜନ୍ମ ନଅନ୍ତୁ
ଶତ ଶତ
ରାମ, ଲକ୍ଷ୍ମଣ ଓ ବଭୀଷଣ
ଆଗାମୀ କାଲ ପାଇଁ
ଆଜ
ଏତକ ହିଁ ହେଉ
ମୋର
ସ୍ୱପ୍ନ ଓ ଜଣାଣ
ସେହ
ପ୍ରଭୁ ଶ୍ରୀ ରାମଙ୍କ
ଚରଣାବନ୍ଦରେ ।

ବ୍ରହ୍ମପୁର



# ତମେ ଯୁଆଡ଼େ ଯିବ ଯାଅ



ଭଗିରଥୀ ବେହେରା

ଉତ୍ତର ନ ପାଇଲା ଯାଏ ତମର ପିଣ୍ଡ କରୁଥିବ
ପ୍ରଶ୍ନ ନ ପଗ୍ବରଲ୍ ଯାଏ ତମ ବାଟ ଓଗାଳୁଥିବ
ତମେ ଯୁଆଡ଼େ ଯିବ ଯାଅ, ମୋ ଠୁ ଫିଟି ପାରବନ
କେବେ ପାଲଟିବ ଅତୀତ, କେବେ ଭବଷ୍ୟତ ରଚୁଥିବ ।

ସାନ୍ନଧ ନ ପାଇଲା ଯାଏ ତମକୁ ମନ ପକାଉଥିବ
ତମଠୁଁ ଅଲଗା ନ ହେବା ଯାଏ ତମକୁ ଭୁଲୁଥିବ
ତମେ କୁଆଡ଼େ ଯିବ ଯାଅ, ମୋ'ଠୁ ଫିଟି ପାରବନ
କେବେ ପ୍ରୀତର ଗଜଲ ଗାଉଥିବ, କେବେ ପ୍ରୀତ ଖୋଜୁଥିବ ।

ସମ୍ପୂର୍ଣ୍ଣତା ନ ଆସିଲା ଯାଏ ପୂର୍ଣ୍ଣତାର ସଂପର୍କ ତୋଳୁଥିବ
ଅସଂପୂର୍ଣ୍ଣତା ନ ଗଲା ଯାଏ, ସ୍ମୃତର ଦୁଆର ଭାଙ୍ଗୁଥିବ
ତମେ କୁଆଡ଼େ ଯିବ ଯାଅ, ମୋ'ଠୁ ଫିଟି ପାରବନ
କେବେ ନେଉ ନେଉ ଦେଇଦେବ, କେବେ ଦେଉ ଦେଉ ନେଇଯିବ ।

ମୋହମୁକ୍ତ ନ ହେବାଯାଏ, ତମକୁ ଜାବୁଡ଼ି ଧରବ
ମୋହମୁକ୍ତ ହେବାଯାଏ, ନଜକୁ ଏକାନ୍ତେ ସାଇତବ
ତୁମେ କୁଆଡ଼େ ଯିବ ଯାଅ, ମୋ'ଠୁ ଫିଟି ପାରବନ
କେବେ ବଞ୍ଚୁ ବଞ୍ଚୁ ମରଯିବ, କେବେ ମରବାପାଇଁ ବଞ୍ଚିଯିବ ।

ସମ୍ପାଦକ, ଗଞ୍ଜାମ କବତାଘର
ବ୍ରହ୍ମପୁର



# ଅନ୍ଧ ଭକାରୁଣୀ



ଅଧ୍ୟାପକ ସୁଶାନ୍ତ ପୁରୋହତ

(ବଶ୍ୱକବ ରବୀନ୍ଦ୍ରନାଥ ଠାକୁରଙ୍କ କ୍ଷୁଦ୍ରଗଳ୍ପର ମର୍ମାନୁବାଦ )

ଆଖିକୁ ଭଲ ଦଶୁ ନଥିବା ଭକାରୁଣୀଟି ସବୁଦନେ ମନ୍ଦିର ଦୁଆର ପାଖରେ ସକାଳୁ ଠିଆ ହୁଏ ଆଶା ବାଡ଼ିଟିଏ ଧର । ମନ୍ଦିରରୁ ଭଗବାନଙ୍କ ଦର୍ଶନ ସାର ଆସୁଥିବା ଶ୍ରଦ୍ଧାଳୁମାନଙ୍କ ଆଗରେ ପଣତ କାନ ପତେଇ କୁହେ, “ଅନ୍ଧୁଣୀକୁ ଦୟା ଟିକେ ହଉ ବାବା, ପ୍ରଭୁ ମଙ୍ଗଳ କରବେ” । ଭଗବାନଙ୍କ ସମୀପକୁ ଆସିଥିବା ଲୋକ ମାନଙ୍କ ମନରେ କରୁଣା  ଭାବ ଆପେ ଆପେ ଆସିଥାଏ, ସେ ଜାଣେ । ଅନେକ ଲୋକ ତା ପଣତରେ କଛି ପଇସା ଦଅନ୍ତ ଆଉ କେତେବେଳେ କେମିତ ସ୍ତ୍ରୀ ଲୋକମାନେ କଛି ଚାଉଳ ବା ଫଳ ମଧ ଦଅନ୍ତ । କେହ କଛି ଦେଲେ ଅନ୍ଧୁଣୀ ସେମାନଙ୍କର ମଙ୍ଗଳ କାମନା କରେ । କେହ ନ ଦେଲେ ବ ସେ ମନ ଦୁଃଖ କରେନ । ସକାଳ ପହରୁ ସେମିତ ଠିଆ ହେଇ ଅନ୍ଧୁଣୀ ସଞ୍ଜ ନଇଁବା ଆଗରୁ ଅନ୍ଧୁଣୀ ମନ୍ଦିର ଆଡ଼କୁ ମୁହଁ କର ବଡ଼ ଭକ୍ତିସହ ଭଗବାନଙ୍କୁ ପ୍ରଣାମ କର ଧନ୍ୟବାଦ ଦଏ ଆଉ ସହରର ଅନ୍ୟ ପଟରେ ଥିବା ତା କୁଡ଼ିଆ କୁ ଆଶାବାଡ଼ି ଠକ ଠକ କର ଚାଲେ । କୁଡ଼ିଆରେ ପହଞ୍ଚି ଫଳ ମୁଳ କ ଆଉ କଛି ଖାଦ୍ୟ ମିଳଥିଲେ ଖାଇ ଦେଇ ଶୋଇଯାଏ ନହେଲେ ଚାଉଳ କଛି ପଖାଳ କର ଖାଏ ।

ଏମିତ କର ଅନ୍ଧୁଣୀର ଦନ ଗଡୁଥାଏ । ଦନେ ଦେଖାଗଲା ଯେ ଅନ୍ଧୁଣୀ ଗୋଟେ ସାନ ଛୁଆକୁ ଆଣି ରଖିଛ । ସେ ଛୁଆଟିର ଖୁବ ଯତ୍ନ ନେଉଛ । ପାଖ ପଡ଼ିଶା ଏହା ନଜର କରଥିଲେ ମଧ କେହ ଅନ୍ଧୁଣୀକୁ ପଚାର ନାହାନ୍ତ ଛୁଆଟି କାହାର । ଏତେ ବଡ଼ ମହାନଗରୀରେ ସମସ୍ତେ ନଜ ନଜ ସମସ୍ୟା, ନଜ କାମ ନେଇ ବ୍ୟସ୍ତ । କାହାର ସମୟ ଅଛ ଅନ୍ଧ ଭକାରୁଣୀର କଥା ବୁଝିବାକୁ  ?

ଏବେ ଅନ୍ଧୁଣୀ ବଡ଼ ସକାଳୁ ଉଠେ, ପିଲାଟିର ସବୁ ଯତ୍ନ ନଏ । ତା ପାଇଁ ଦନ ସାରା ଖାଇବା ପାଇଁ ତଆର କର ରଖିଦଏ । ବଜାରରୁ କଣି ଆଣିଥିବା





ଶସ୍ତା ଖେଳଣା ମଧ୍ୟ ପିଲାଟି ପାଖରେ ରଖେ ତାକୁ ଖୁବ ସ୍ନେହ କରି ଆଉ କୁଡ଼ିଆର ତାଟି କବାଟ ଆଉଜେଇ ଦେଇ ମନ୍ଦିରକୁ ବାହାରି ଯାଏ । ଗଲା ବେଳେ ପଡ଼ିଶାଘରେ ଥିବା ବୁଢ଼ୀକୁ ବି କହି ଯାଇଥାଏ ଥରେ ଥରେ ଦେଖି ଆସୁଥିବାକୁ । ଏବେ ଅନ୍ଧୁଣୀ ମନ୍ଦିରରେ ଭିକ ମାଗି ସାରି ଆସିଲା ବେଳେ ରାସ୍ତାରେ ବି ଲୋକଙ୍କୁ ନେହୁରା ହୁଏ । କିନ୍ତୁ ରାସ୍ତାରେ ଯାଉଥିବା ଖୁବ କମ ଲୋକ ତାକୁ ପଇସା ଦିଅନ୍ତି । କେହି କେହି ବିରକ୍ତ ହେଇ ଦୁଇପଦ ଗାଳି ବି ଶୁଣାନ୍ତି । କିନ୍ତୁ ଅନ୍ଧୁଣୀ କିଛି ବି ମନ କଷ୍ଟ କରେନି । ତଥାପି ଫେରିଲା ରାସ୍ତାରେ ଅନ୍ଧୁଣୀକୁ କିଛି ପଇସା ନିଶ୍ଚୟ ମିଳେ । ଏବେ ଅନ୍ଧୁଣୀ ତାର ଆଉ ପିଲାଟିର ଖାଇବା ଆଉ ଅନ୍ୟ ଖରଚ ପରେ ବଳୁଥିବା ପଇସାକୁ ଘର କୋଣରେ ଗାତଟେ କରି ସେଇଠି ମାଠିଆଟେ ପୋତି ଦେଇଥାଏ, ସେଇଥିରେ ରଖେ ଓ ଉପରେ କିଛି ଢାଙ୍କି ଦେଉଥାଏ । ପିଲାଟି ସ୍କୁଲ ଯିବା ବୟସ ହେଲାରୁ ତାକୁ ପାଖ ଚାଟଶାଳୀରେ ବି ଦେଇ ଦେଲା । ଖୁବ ଯତ୍ନ ନିଏ ଅନ୍ଧୁଣୀ ପିଲାଟିର । ପିଲାଟି ବି ସନ୍ଧ୍ୟାରେ ଅନ୍ଧୁଣୀ ଫେରିଲେ ମାଁ, ମାଁ ଡାକି ତାକୁ କୁଣ୍ଢେଇ ପକାଏ ଓ ବହୁତ ଗେଲ ହୁଏ ।

ଦିନେ ଅନ୍ଧୁଣୀ ଦେଖିଲା ତା ପଇସା ରଖୁଥିବା ମାଠିଆଟି ପୁରି ହେଇଗଲାଣି । ତାକୁ ଡର ମାଡ଼ିଲା । କାଳେ କେହି ଚୋର ଆସି ତାକୁ ନେଇଯିବ । ତାର ଏତେ ଦିନରୁ ରଖିଥିବା ସମ୍ପତ୍ତି ଟିକକ ଚାଲିଯିବ । ସେ ସବୁ ପଇସାକୁ ଧରି ସେ ଅଞ୍ଚଳରେ ଥିବା ସେଠଙ୍କ ପାଖକୁ ଗଲା । ତାଙ୍କୁ ନେହୁରା ହେଇ କହିଲା ତା ପଇସା ସବୁ ନିରାପଦରେ ତା ନାଁରେ ରଖିଦେଇ ଥିବାକୁ । ସେଠ ବିରକ୍ତ ହେଇ ତା ନାଁ ପଚାରିଲେ ଆଉ ମୁନସୀକୁ ଡାକି ପଇସା ସବୁ ଗଣିକି ରଖିଦେବାକୁ କହିଲେ । ଅନ୍ଧୁଣୀ ଶାନ୍ତିରେ ନିଶ୍ୱାସ ନେଇ ଫେରିଲା ।

ଏମିତି ଅନେକ ଦିନ ଚାଲିଲା ପରେ ଦିନେ ସନ୍ଧ୍ୟାରେ ଅନ୍ଧୁଣୀ ଫେରି ଦେଖିଲା ପିଲାଟା ଜ୍ୱରରେ ପଡ଼ିଛି । ଝଡ଼ାଫୁଙ୍କା ଠୁ ଆରମ୍ଭ କରି ଟୁଟୁକା, ଜଡ଼ିବୁଟି ଔଷଧ ଦେଲେ ବି ୩, ୪ ଦିନ ଯାଏ ଜ୍ୱର ଛାଡ଼ିଲାନି । ଦିନକୁ ଦିନ ପିଲାଟିର ଅବସ୍ଥା ଖରାପ ହେବାରେ ଲାଗିଲା । ପଡ଼ୋଶୀ ବୁଢ଼ୀ ଆସି କହିଲା ତାକୁ ଡାକ୍ତର ପାଖକୁ ନେଇ ଯା । ଡାକ୍ତରୀ ଔଷଧ ଖାଇଲେ ଭଲ ହେଇଯିବ ।

ଆର ଦିନ ସକାଳେ ବୁଢ଼ୀ ସେଠ ପାଖକୁ ଗଲା ତା ପଇସାରୁ କିଛି ଆଣିବାକୁ । ସେଠ ତାକୁ ଦେଖି ନ ଚିହ୍ନିଲା ପରି କଲେ । ସେ ତା ପଇସାରୁ କିଛି ଦେବାକୁ କହିବାରୁ କହିଲେ, "ତୁ କିଏ ? କି ପଇସା ? ମୁଁ ତ ତତେ କେବେ ଦେଖିନି" । ବୁଢ଼ୀ ଚମକି ପଡ଼ି କାନ୍ଦି କାନ୍ଦି ହେଇ ପୁଣି ଆଗର କଥା କହିଲା । ମୁନସୀ ସବୁ ପଇସା ଗଣି ଖାତାରେ ତା ନାଁ ଲେଖିଥିବା କହିଲା । ସେଠ



ମୁନସୀଙ୍କୁ ଡକାଇଲେ ଆଉ ପଚାରିଲେ, "ଖାତା ଦେଖ ବୁଢ଼ୀଟା ନାଁ ରେ ପଇସା ଅଛି କି?" ମୁନସୀ ଖାତାଟିଏ ଓଲଟେଇ ଦେଖି କହିଲା, "ବୁଢ଼ୀ ନାଁ ହିଁ ତ ଖାତାରେ ନାହିଁ । ସେ କିଛି ପଇସା ଦେଇ ନ ଥିଲା ।"

ଅନ୍ଧୁଣୀ ମୁଣ୍ଡରେ ବଜ୍ର ପଡ଼ିଲା ପରି ଲାଗିଲା । ପୁଣି ନେହୁରା ହେଇ କହିଲା, "ମୋ ପଇସା ନ ହେଲେ ନାଇ କିଛି ଟଙ୍କା ଉଧାରୀ ହେଲେ ଦିଅନ୍ତୁ । ଡାକ୍ତର ଦେଖେଇ ଔଷଧ ନ ଆଣିଲେ ମୋ ପିଲା ତ ମରିଯିବ ଯେ ।" ସେଠ କିନ୍ତୁ ତା କଥା କିଛି ଶୁଣିଲେଣି ଆଉ ଚାକର ଲଗେଇ ତାକୁ ଗସ୍ତାରୁ ବାହାର କରିଦେଲେ । ଅନ୍ଧୁଣୀ ହତାଶ ହେଇ ଘର ବାଟରେ ବହୁତ ସମୟ ବସି କାନ୍ଦିଲା ଆଉ ନିରୂପାୟ ହେଇ ଘରକୁ ଫେରିଲା ।

ପରଦିନ ସକାଳୁ ଅନ୍ଧୁଣୀ ପୁଣି ସେଠ ଘରକୁ ଗଲା । ହେଲେ ଦରୁଆନ ତାକୁ ବାହାରୁ ତଡ଼ି ଦେଲା । ସେଠ ଝରକାରୁ ଦେଖିଲେ । କୌତୁହଳବଶତଃ ସେ ବୁଢ଼ୀର କୁଡ଼ିଆ ଖୋଜି ପହଞ୍ଚିଲେ । କୁଡ଼ିଆ ଭିତରେ ପହଞ୍ଚି ପିଲାଟିକୁ ଦେଖିବା ମାତ୍ରେ ଆଚମ୍ବିତ ହେଇଗଲେ । ୧୦ ବର୍ଷର ପିଲାଟିର ଚେହେରା ଠିକ ତାଙ୍କପରି ଥିଲା । ହାତରେ ଥିବା କଳାଜାଇ ବି ଠିକ ସେଇ ଜାଗାରେ ଥିଲା, ଯେପରି ତାଙ୍କର ଏକ ମାତ୍ର ପୁତ୍ର ସନ୍ତାନ ସାତ ବର୍ଷ ଆଗରୁ ମେଳାରେ ହଜି ଯାଇଥିଲା । ସେ ବହୁତ ଖୋଜାଖୋଜି କରିଥିଲେ ବି ତାକୁ ଆଉ ପାଇ ନ ଥିଲେ । ନିଜ ପୁଅକୁ ଚିହ୍ନି ସେ ଅନ୍ଧୁଣୀକୁ କହିଲେ, "ଏଇଟା ତ ମୋ ପୁଅ । ସାତ ବର୍ଷ ଆଗରୁ ହଜି ଯାଇଥିଲା । ମୁଁ ତାକୁ ଏବେ ନେବି ଆଉ ଘରେ ଭଲ ଡାକ୍ତର ଦେଖେଇ ତାକୁ ଭଲ କରିବି ।"

ଅନ୍ଧୁଣୀ ଯେତେ କାନ୍ଦା କଟା କଲେ ବି ସେଠ ଶୁଣିଲେନି ଆଉ ଜୋର କରି ପିଲାଟିକୁ ଉଠେଇ ଆଣି ତାଙ୍କ ଘୋଡ଼ା ଗାଡ଼ିରେ ଘରକୁ ନେଇ ଆସିଲେ । ଅନ୍ଧୁଣୀ ବେଗୁର ଭାରି ମନ ଦୁଃଖରେ କାନ୍ଦି କାନ୍ଦି ରହିଲା ।

ସେଠ ପିଲାକୁ ଘରକୁ ଆଣି ଡାକ୍ତର ଡକେଇଲେ । ପିଲାଟିର ହୋସ ନ ଥିଲା । ଡାକ୍ତରେ ଆସି କିଛି ଔଷଧ ଦେଲେ । ଆରଦିନ ସକାଳେ ପିଲାଟିର ହୋସ ଆସିବା ମାତ୍ରେ ସେ ମାଁ ମାଁ ଡାକ ଛାଡ଼ିଲା । ଯିଏ ଯେତେ ଆଉ କହିଲେ ବି ତାର କାନ୍ଦ ବୋବାଳି ବନ୍ଦ ହେଲାନି । ସେ ପୁଣି ବେହୋଶ ହେଇଗଲା । ଡାକ୍ତର ଆସି ଯେତେ ଚେଷ୍ଟା କଲେ ବି ପିଲାର ଦେହ ଆହୁରି ଆହୁରି ଖରାପ ଆଡ଼କୁ ଗଲା । ଯିଏ ଯାହା ଦେଲେ ବି ଛୁଇଁଲାନି । ସେଠ ଚିନ୍ତାରେ ପଡ଼ିଗଲେ ଓ ଘୋଡ଼ା ଗାଡ଼ି ନେଇ ଅନ୍ଧୁଣୀର କୁଡ଼ିଆରେ ପହଞ୍ଚିଲେ । ସେତେବେଳକୁ ଅନ୍ଧୁଣୀ ବି ନ ଖାଇ ନ ପିଇ





ବହୁତ ବେମାର ପଡ଼ିଯାଇଥାଏ । ଉଠିବାକୁ ବଳ ନ ଥାଏ । ସେଠ ବୁଢ଼ୀପାଖରେ ପହଞ୍ଚି କହିଲେ, "ତମ ପୁଅ ତମକୁ ଝୁରି କିଛି ଖାଉନି କି ଔଷଧ ନେଉନି । ସେ ମରିବା ଅବସ୍ଥାରେ ଆସିଗଲାଣି । ତମେ ଚାଲ । ତମକୁ ଦେଖିଲେ ସେ ଭଲ ହେବ ।"

ଅନ୍ଧୁଣୀ କହିଲା, "ବାବୁ ତାକୁ ମରିବାକୁ ଦିଅ, ମୁଁ ବି ତ ଏଠି ମରିଯିବି । ଆର ପାରିରେ ଆମ ଦୁହିଁଙ୍କ ଭେଟ ହେବ । ସେତେବେଳେ ମୁ ତାର ବହୁତ ଯତ୍ନ ନେବି ଓ ସେ ଖୁସି ରେ ରହିବ ।"

ସେଠ ଏ କଥା ଶୁଣି ହତବମ୍ଭ ହୋଇଗଲେ । ସେ ଅନ୍ଧୁଣୀର ଗୋଡ଼ତଳେ ପଡ଼ି କହିଲେ, "ମୋର ଅପରାଧ ହୋଇଛି । ତମେ ତାର ମାଁ । ନିଜର ମାଁ ନ ହେଲେ ବି ତାକୁ ମା'ର ମମତା ଦେଇ ପାଳିଛ । ତମ ମାଁ ର ମମତା କଣ ତାକୁ ମାରିବାକୁ ଚାହିଁବ କି ?"

ଅନ୍ଧୁଣୀ ଚିନ୍ତାରେ ପଡ଼ିଗଲା । ତା'ର ମାଁ ହୃଦୟ ତରଳି ଗଲା । ସେ ଉଠିପଡ଼ି ସେଠଙ୍କ ସଙ୍ଗେ ଘୋଡ଼ା ଗାଡ଼ିରେ ତାଙ୍କ ଘରକୁ ଗଲା । ପିଲାର ଖଟରେ ତା ମୁଣ୍ଡକୁ କୋଳରେ ଧରି ସ୍ନେହରେ ହାତ ବୁଲାଇ ତାକୁ ଗେଲ କଲା । ପିଲାଟି ଆଖି ଖୋଲି ତା ମା'କୁ ଦେଖି ଖୁସିରେ କୁଣ୍ଢେଇ ଧରିଲା । ଅନ୍ଧୁଣୀ ତା ପାଖେ ପାଖେ ଦିନ ରାତି ରହି ତାର ସେବା କଲା ପରେ ପିଲାଟି ଧିରେ ଧିରେ ଠିକ ହେବାକୁ ଲାଗିଲା । ମାସକ ପରେ ପିଲାଟି ପୁରା ଠିକ ହୋଇଗଲା । ପିଲାଟି ବି ଧିରେ ଧିରେ ସେଠ ଆଉ ତାଙ୍କ ପତ୍ନୀଙ୍କୁ ଆପଣେଇ ନେଲା ପରି କଲା । ହେଲେ ଅନ୍ଧୁଣୀକୁ ହିଁ ମାଁ ବୋଲି ଡାକେ ଆଉ ତାକୁ ଛାଡ଼େ ନାହିଁ ମୁହୂର୍ତ୍ତେ ବି ।

ସେଠ ଅନ୍ଧୁଣୀକୁ ସେଇଠି ସ୍ଥାୟୀ ଭାବରେ ରହିଯିବାକୁ କହିଲେ । ଅନ୍ଧୁଣୀ ପାଇଁ କୋଠରୀ ଆଉ ସବୁ ସୁବିଧା କରିଦେବାକୁ କହିଲେ । କିନ୍ତୁ ଅନ୍ଧୁଣୀ ମନା କଲା । କହିଲା, "ମୋ ସ୍ଥାନ ସେଇ ଭଗବାନଙ୍କ ମନ୍ଦିର ଦୁଆର ଆଗରେ । ମୁଁ ମୋ କୁଡ଼ିଆକୁ ଫେରି ଯାଉଛି । ତମେ ତମର ପୁଅକୁ ପାଇଲ । ତୁମ ପାଖେ ରହିଲେ ସେ ସବୁ ସୁବିଧା ପାଇବ । ତାକୁ ସୁଖରେ ରଖ ।" ସେଠ ଆଉ ବାଧ କରି ପାରିଲେନି । ସେ ଗୋଟେ ବଡ଼ ଥଳିରେ ଟଙ୍କା ଆଣି ଅନ୍ଧୁଣୀ ହାତରେ ଦେବାକୁ ଯାଇ କହିଲେ, "ମୁଁ ଅପରାଧୀ, ତମ ଟଙ୍କା ଲୋଭରେ ନେଇଯିବାକୁ ବସିଥିଲି । ମୋ ପୁଅକୁ ଏତେ ଯତ୍ନରେ ରଖିଥିବାରୁ ମୁଁ ସବୁଦିନ ପାଇଁ ଋଣୀ ରହିବି । ମୋତେ କ୍ଷମା କରିଦେବ ।"

ଅନ୍ଧୁଣୀ କିନ୍ତୁ ହାତ ଉଠେଇ କହିଲା, "ସେଇ ଟଙ୍କା ତ ମୋ ପୁଅ ପାଇଁ ହିଁ ରଖିଥିଲି, ସେ ଏବେ ତମ ପାଖରେ ରହିବ । ଟଙ୍କା ତା ପାଇଁ ରଖ । ମୋର ଟଙ୍କା କଣ ହେବ । ଭଗବାନ





ଅଛନ୍ତ । ପେଟକୁ ଗଣ୍ଡାଏ ମିଳଯିବ ।” ଏତକ କହ ବୁଢ଼ୀ ଆଶାବାଡ଼ିଟା ଧର ରସ୍ତା ଆଡ଼କୁ ଚାଲଲା । ଆଉ ପଛକୁ ଥରେ ଅନେଇଲା ନାହିଁ । ତେବେ ତା ଅଳ୍ପ ଅଳ୍ପ ଦଶୁଥିବା ଦୁଇ ଆଖିରୁ ଅନବରତ ଗଡ଼ି ଯାଉଥିଲା ଦୁଇ ଧାର ଲୁହ ।

ଅଧାପକ ସୁଶାନ୍ତ ପୁରୋହତ

ଅବସରପ୍ରାପ୍ତ ଅଧକ୍ଷ,

ଝାରସୁଗୁଡ଼ା ମହାବଦ୍ୟାଳୟ,

ସମ୍ବଲପୁର



# ଅଲମ୍ପିକରେ ଭାରତ



ଅଧାପକ ସୁଶାନ୍ତ ପୁରୋହିତ

ଆଜ ଯାଏଁ ହୋଇଥିବା ୩୦ଟି ଅଲମ୍ପିକ ( ଗ୍ରୀଷ୍ମକାଳୀନ) ରେ ଭାରତ ସମୁଦାୟ ୨୭ ଟି ପଦକ ଜିତ ପାରଛ ଯାହା ମଧ୍ୟରୁ କେବଳ ହକରେ ୮ ଟି ସ୍ୱର୍ଣ୍ଣ, ୧ ଟି ରୌପ୍ୟ ଓ ୨ ଟି କାଂସ୍ୟ ପଦକ ଅନ୍ତର୍ଭୁକ୍ତ । ୧୯୨୮ ଅଲମ୍ପିକରୁ ୧୯୭୨ ଯାଏଁ ହକରେ ଭାରତର ସମ୍ପୂର୍ଣ୍ଣ ଆଧିପତ୍ୟ ରଖିଥିଲା । କନ୍ତୁ ୧୯୭୬ରେ ହକରେ କୌଣସି ପଦକ ପାଇ ପାର ନ ଥିଲା । ଯଦଓ ୧୯୮୦ ମସ୍କୋ ଅଲମ୍ପିକରେ ଭାରତ ଶେଷ ଥର ପାଇଁ ପୁଣି ସ୍ୱର୍ଣ୍ଣ ପଦକ ପାଇଲା, ତା ପରଠୁ ଆଜଯାଏଁ ହକରେ କୌଣସି ପଦକ ପାଇନାହିଁ ଓ ହକରେ ଭାରତୀୟ ଆଧିପତ୍ୟ ସମାପ୍ତ ହେଇଗଲା ବୋଲ କୁହା ଯାଇପାରେ । ତେବେ ୧୯୦୦ ମସିହାରେ ନର୍ମାନ ପ୍ରୀଚଗାର୍ଡ ପାଇଥିବା ବ୍ୟକ୍ତିଗତ ପଦକ ଛଡ଼ା ୧୯୪୮ ଯାଏ କେହ ଆଉ ବ୍ୟକ୍ତିଗତ ପଦକ ପାଇ ପାର ନ ଥିଲେ, ୧୯୫୨ ହେଲସିଙ୍କିରେ ହୋଇଥିବା ଅଲମ୍ପିକରେ କେଶବ ଯାଦବ ମଲ୍ଲଯୁଦ୍ଧରେ କାଂସ୍ୟ ପଦକ ପାଇବା ଯାଏ ।

ପ୍ରଥମ କର ୧୯୦୦ ମସିହା ପ୍ୟାରସ ଅଲମ୍ପିକରେ ଭାରତ ଭାଗ ନେଇଥିଲା ମାତ୍ର ଜଣେ ଆଥଲେଟଙ୍କୁ ନେଇ । ନର୍ମାନ ପ୍ରୀଚଗାର୍ଡ ( Norman Pritchard ) ଯଦଓ ମୂଳ ଭାରତୀୟ ନ ଥିଲେ, ସେ ବ୍ରଟିଶ ଶାସନ ଅମଳରେ ଭାରତ ଦେଶ ତରଫରୁ ଅଲମ୍ପିକରେ ଭାଗ ନେଇ ଏଥଲେଟିକରେ ଦୁଇଟି ରୌପ୍ୟ ପଦକ ପାଇଥିଲେ । ୧୯୫୨ ପରେ ୧୯୯୬ ଆଟଲାଣ୍ଟା ଅଲମ୍ପିକରେ ଟେନସ ଖେଳାଳ ଲଏଣ୍ଡର ପେସ୍ କାଂସ୍ୟ ପଦକ ପାଇଥିଲେ । ୨୦୦୦ ମସିହାରେ ସିଡ଼ନୀ ଅଲମ୍ପିକରେ ଭାରୋତ୍ତୋଳନରେ କର୍ଣ୍ଣମ୍ ମାଲେଶ୍ୱରୀ କାଂସ୍ୟ ପଦକ ଜତଥିଲେ । ଏଥେନ୍ସ ଅଲମ୍ପିକରେ ରାଇଫଲ ସୁଟିଙ୍ଗରେ ରାଜ୍ୟବର୍ଦ୍ଧନ ରାଠୋର ଏକ ମାତ୍ର ପଦକ ବଜେତା ଭାବରେ ରୌପ୍ୟ ପଦକ ପ୍ରାପ୍ତ ହେଇଥିଲେ ।

ପ୍ରଥମ ବ୍ୟକ୍ତିଗତ ସ୍ୱର୍ଣ୍ଣ (ବର୍ତ୍ତମାନ ସୁଦ୍ଧା ଏକମାତ୍ର) ପଦକ ଆଣିବାର





ସମ୍ମାନର ଅଧିକାରୀ ହେଲେ ଅଭିନବ ବନ୍ଦ୍ରା । ସେ ୨୦୦୮ରେ ବେଜିଂ ଅଲମ୍ପିକରେ ପିସ୍ତଲ ସୁଟିଙ୍ଗରେ ସ୍ୱର୍ଣ୍ଣ ପଦକ ପାଇଲେ । ସେହି ଅଲମ୍ପିକରେ ଆଉ ୨ ଜଣ ଭାରତୀୟ, ବିଜେନ୍ଦର ସିଂ ମୁଷ୍ଟି ଯୁଦ୍ଧ ଓ ସୁଶୀଲ କୁମାର ମଲ୍ଲ ଯୁଦ୍ଧରେ କାଂସ୍ୟ ପଦକ ହାସଲ କରିଥିଲେ । ୨୦୧୨ ଅଲମ୍ପିକରେ ଭାରତୀୟ ମାନେ ଆଜି ଯାଏ ଭାଗ ନେଇଥିବା ସବୁ ଅଲମ୍ପିକରୁ ସର୍ବାଧିକ ସଂଖ୍ୟାର ପଦକ ପାଇଥିଲେ । ଲଣ୍ଡନରେ ହୋଇଥିବା ଏହି ଅଲମ୍ପିକରେ ଗଗନ ନାରଙ୍ଗ ଓ ବିଜୟ କୁମାର ସୁଟିଙ୍ଗରେ ଯଥା କ୍ରମେ କାଂସ୍ୟ ଓ ରୌପ୍ୟ ପଦକ ପାଇଥିବା ବେଳେ ସାଇନା ନେହ୍‌ବାଲ ବ୍ୟାଡ଼ମିଣ୍ଟନରେ କାଂସ୍ୟ, ସୁଶୀଲ କୁମାର କୁସ୍ତିରେ ରୌପ୍ୟ, ମାରିକମ ମହିଳା ମୁଷ୍ଟିଯୁଦ୍ଧରେ କାଂସ୍ୟ ଓ ଯୋଗେଶ୍ୱର ଦତ୍ତ ମଲ୍ଲଯୁଦ୍ଧରେ କାଂସ୍ୟ ପଦକ ପାଇ ସମୁଦାୟ ୬ ଟି ପଦକ ଭାରତପାଇଁ ଆଣିଥିଲେ ।

ବ୍ରାଜିଲର ରିଓ ସହରରେ ହୋଇଥିବା ଚଳିତ ଅଲମ୍ପିକ ବର୍ତ୍ତମାନ ସମାପ୍ତ ହୋଇଥିବା ବେଳେ ୧୧୮ ଜଣିଆ ଭାରତୀୟ ଦଳ କେବଳ ଦୁଇଟି ପଦକ ପଦକ ପାଇଛି । ସାକ୍ଷୀ ମଲିକ ମହିଳା ମଲ୍ଲଯୁଦ୍ଧରେ ଏବଂ ପି ଭି ସିନ୍ଧୁ ବ୍ୟାଡ଼ମିଣ୍ଟନରେ ତାହା ପାଇ ସାରିଛନ୍ତି ।

ତେବେ ପି ଭି ସିନ୍ଧୁ ମହିଳା ବ୍ୟାଡ଼ମିଣ୍ଟନର ଫାଇନାଲକୁ ପହଞ୍ଚି କଡ଼ା ମୁକାବିଲା କରି ମଧ୍ୟ ହାରି ଯାଇଥିଲେ ଓ ରୌପ୍ୟ ପଦକ ପ୍ରାପ୍ତ ହେଲେ । ଅବଶ୍ୟ ଅନ୍ତିମ ଦିନରେ ମଲ୍ଲଯୁଦ୍ଧରେ ପଦକ ମିଳିବାର ସମ୍ଭାବନାକୁ ସମସ୍ତେ ଅପେକ୍ଷା କରିଥିବା ବେଳେ ତାହା ସମ୍ଭବ ହୋଇପାରିଲା ନାହିଁ । ଯେଉଁ ଭାରତରେ ଝିଅ କନ୍ୟାକୁ ବଞ୍ଚିବାକୁ ଦେବାକୁ ଅହରହ ଜନମତ ଗୁଳିଛି, ସେଇ ଭାରତରେ ଆଜି କେବଳ ୨ ଜଣ ଝିଅ ହିଁ ପଦକ ଜିତି ଦେଶର ସମ୍ମାନକୁ ବଜାୟ ରଖିଲେ । ନହେଲେ ୧୧୮ ଜଣିଆ ଭାରତୀୟ ଦଳ ଖାଲି ହାତରେ ରିଓ ଅଲମ୍ପିକରୁ ଫେରି ଥାଆନ୍ତା ।

ଅବସର ପ୍ରାପ୍ତ ଅଧକ୍ଷ,

ସମ୍ବଲପୁର



# ଶ୍ରୀଜଗନ୍ନାଥଙ୍କର ଗୋଟିଏ ଆଖି



ଡଃ ମଧୁସ୍ମିତା ମିଶ୍ର

ପୁରୀ ଯିବାବେଳେ ମନରେ ଭାବନା, ବହୁତ ଦନ ହେବ ଜଗନ୍ନାଥଙ୍କୁ ଦେଖିନ । ରଥ ବେଳେ ମଧ୍ୟ ଆସିପାରଲନ । ଆଜ ଯେମିତ ହେଉ ଜଗନ୍ନାଥଙ୍କୁ ଦେଖିକର ଆସିବ । ମନ କଥା ମନରେ ଥାଏ । ଭାବଲ କାଲ ତ ନଳାଦ୍ରୀ ବଜେ ସରଛ, ଆଜ ନଶ୍ଚୟ ମନ୍ଦିର ଫାଙ୍କା ଥିବ । ହେଲେ ବଡ଼ଦେଉଳ ଭତରେ ପଶି ମୁଣ୍ଡ ଘୁରଗଲା । ବାପରେ ବାପ କ ଭଡ଼ ! ଗ୍ଲାନଆ ଲାଗୁଥାଏ । ସେଥିରେ ପୁଣି ଭନ୍ନ ଭନ୍ନ ବୟସର ପଣ୍ଡାମାନେ । କଏ କହୁଛନ୍ତି ଦଦ ଏସୁନ୍, ଏଇ ଦଗେ ଏସୁନ୍, ଆମି ଆପନାକେ ନଏଯାବୋ । ଯାତ୍ରୀଙ୍କ ଭାଷାରେ କହଲେ ସିନା ଦ ପଇସା ମିଳବ ! ଏଇ ମାନସିକତା କନ୍ତୁ ଅନ୍ୟ କୌଣସି ରାଜ୍ୟରେ ଦେଖିବାକୁ ମିଳେନାହିଁ । ଏହ ସମୟରେ କଏ ପୁଣି ହାତଧର ଟାଣି ନେଇଛନ୍ତି ଆସୁନାହାନ୍ତି ମେଡ଼ମ୍, ଜଗନ୍ନାଥଙ୍କୁ ଭୋଗ ଲଗାଇବେ ? ଏପଟେ ଆସନ୍ତୁ । ମନେ ମନେ ବରକ୍ତ ହେଲେ ସୁଦ୍ଧା ଚୁପଚାପ ଚାଲଥାଏ । ଗରୁଡ଼ ସ୍ତମ୍ଭ ପାଖରେ ବ ପ୍ରବଳ ଠେଲାପେଲା । ଜଗନ୍ନାଥ ତ ଦଶୁନାହାନ୍ତି । ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କରବାର ଦୁର୍ବାର ଅଭଳାଷା ଥିଲେ ସୁଦ୍ଧା ଜଗାକୁ ଦେଖିବାର ଲୋଭ ନଆର । କନ୍ତୁ ଦଶୁଛନ୍ତି କେଉଁଠି ? ସମୟ ସନ୍ଧ୍ୟା ପାଞ୍ଚଟା । ଗରୁଡ଼ ସ୍ତମ୍ଭ ପଛରେ ଗୋଇଠି ଟେକ ବୁଢ଼ା ଆଙ୍ଗୁଠି ଟିପରେ ଠିଆ ହୋଇ ଜଗାର ମୁହଁଟିକେ ଦେଖିବାପାଇଁ ଆପ୍ରାଣ ଚେଷ୍ଟା କରବାପରେ ଗୋଟିଏ ଆଖି ଦେଖାଗଲା । ଜୟବଜୟ ଦ୍ୱାରର ଗୋଟିଏ ପଟ କବାଟ ଟିକଏ ଆଗକୁ ଚାଲ ଆସିଥିବାରୁ ଆରପଟ ଆଖିଟି ଲୁଚ ଯାଇଛ ।

ଦୁଃଖ ଲାଗିଲା । ଚନ୍ତା କଲ, ପୁରୀର ବୋହୁ ହୋଇ ମଧ୍ୟ ଶାନ୍ତରେ ଜଗନ୍ନାଥଙ୍କୁ ଦେଖି ହେଉନ ? ତରଶି ବର୍ଷ ତଳେ ଯେତେବେଳେ ବ ସମସ୍ୟା ଆସେ, ଦୁଃଖ ଲାଗେ ବା ପର୍ବପର୍ବାଣୀରେ ଜଗାକୁ ଦେଖିଆସିବାକୁ ମନ ହୁଏ, ସେତେବେଳେ ସମୟ, ଦନ, ମୁହୂର୍ତ୍ତ, ସାଙ୍ଗ, କାହାର ବ ଆବଶ୍ୟକତା ନଥିଲା । ପାହାନ୍ତିଆ, ଦନ ଦପ୍ରହର, ସକାଳ, ସନ୍ଧ୍ୟା, ରାତ ଯେତେବେଳେ ହେଉ ପଛେ





ଘଡ଼ିଏ ମହାଲକ୍ଷ୍ମୀ ଆଉ ସତ୍ୟନାରାୟଣଙ୍କୁ ଏକାଠି ଦର୍ଶନ କରିବା ଉଦ୍ଦେଶ୍ୟରେ ମନ୍ଦିର ପ୍ରାଙ୍ଗଣରେ ବସିଗଲେ ଯେଉଁ ଶାନ୍ତି ମିଳୁଥିଲା ତାହା ଭାଷାରେ ଅବର୍ଣ୍ଣନୀୟ । ଆଜି ଶ୍ରୀମନ୍ଦିରେ ବେଢ଼ାରେ ପାଦ ପକାଇବାକୁ ଜାଗା ନାହିଁ । ଆଉ ଜଗନ୍ନାଥଙ୍କ ମନ୍ଦିରର ଶକ୍ତିପୁଞ୍ଜରୁ ଶାନ୍ତି ଆଉ ଆଶୀର୍ବାଦ ଖୋଜିବାର ପ୍ରଶ୍ନ ଉଠୁଛି କେଉଁଠି ?

ଠିକ୍ କଥା । ତିରିଶି ବର୍ଷ ଭିତରେ ବହୁତ କିଛି ବଦଳି ଯାଇଛି । ଲୋକ ସଂଖ୍ୟା, ଗମନାଗମନ, ଯୋଗାଯୋଗ, ଗଣମାଧ୍ୟମ ସବୁଠି ପରିବର୍ତ୍ତନର ଛାପ । ତାହାକୁ ତାଳ ଦେଇ ପୁରୀରେ ଭକ୍ତଙ୍କ ଆଗମନ ମଧ୍ୟ ବୃଦ୍ଧିପାଇଛି । ଏହି ପରିବର୍ତ୍ତନ ଅବଶ୍ୟ ସକାରାତ୍ମକ ନା ନକାରାତ୍ମକ ଭାବରେ ହୋଇଛି ତାହା ବିଗ୍ୟର ସାପେକ୍ଷ । ସର୍ବୋପରି ଏହାର ପରିଣତି ଜନମାନସକୁ କେତେଦୂର ଓ କିପରି ପ୍ରଭାବିତ କରିଛି ତାହା ମଧ୍ୟ ଗବେଷଣାର ବିଷୟ ହୋଇପାରେ ।

ଉପରୋକ୍ତ ପୃଷ୍ଠଭୂମିର ପରିପ୍ରେକ୍ଷୀରେ ଶ୍ରୀ ଜଗନ୍ନାଥଙ୍କ ସ୍ପର୍ଶ ପ୍ରସଙ୍ଗ ଅତ୍ୟନ୍ତ ସ୍ପର୍ଶକାତର ଓ ସମ୍ବେଦନଶୀଳ ମନେ ହୁଏ । ଲୋକ କଥା ଅନୁସାରେ ଦାଶିଆ ହାତରୁ ନାରିକେଳ (ନଡ଼ିଆ) ନେବା ବେଳେ ଭୁକ୍ତ ଭକ୍ତ ବନ୍ଧୁ ମହାନ୍ତିଙ୍କୁ ଭୋଜନ ଦେବା ବେଳେ କାହିଁ ଜଗନ୍ନାଥଙ୍କୁ ସ୍ପର୍ଶ କରିଥିବା କଥା କେହି ଚିନ୍ତା କରିନଥିଲେ ତ ? ଏହି ପ୍ରସଙ୍ଗ ସେତେବେଳେ ମଧ୍ୟ ଉଠାଇ ହୁଅନ୍ତା, କିନ୍ତୁ ସେମିତି କିଛି ହୋଇଥିବା କଥା ତ କାହିଁ ଆମେ କେବେ ଶୁଣିନୁ ? ହୁଏତ ଏଥିପାଇଁ ହୋଇନଥିବ ଯେ ସେ ସବୁ ଘଟଣାରେ ଭକ୍ତର ଆବିଳତା ଆଉ ଭକ୍ତିର ପରମ ଅବସ୍ଥା ତଥା ମହାପ୍ରଭୁଙ୍କ ମହାତ୍ମ୍ୟ ଭରି ରହିଥିଲା । ହେଲେ ଏଠାରେ ‘ଜଗନ୍ନାଥଙ୍କୁ’ ଏବଂ ‘ଜଗନ୍ନାଥଙ୍କ’ ଶବ୍ଦ ଦ୍ୱୟ ମଧ୍ୟରେ ସ୍ଥିତି ପ୍ରଣିଧାନଯୋଗ୍ୟ ।

ଏକ ନାହିଁ, ଦୁଇ ନାହିଁ ଅନେକ ଓ ବହୁ କୋଟି କୋଟି ଉଦାହରଣ ରହିଛି, ଯାହାକି ଜଗନ୍ନାଥଙ୍କ ବୈଶିଷ୍ଟ୍ୟକୁ ପ୍ରତିପାଦନ କରିଥାଏ । ବ୍ୟକ୍ତିଗତ ତଥା ସାମୁହିକ ସବୁସ୍ତରରେ ଅନୁଭବିଗଣ, ଭକ୍ତଗଣ ଜଗନ୍ନାଥଙ୍କ ଅଦୃଶ୍ୟ ସ୍ପର୍ଶର ଅନୁଭୂତି ଅଙ୍ଗେ ନିଭେଇଛନ୍ତି ।

ସମ୍ପ୍ରତି ଗୁଣ୍ଡିଚା ସମୟରେ ଜଗନ୍ନାଥଙ୍କୁ ସ୍ପର୍ଶ ନେଇ ରାଜନୀତିକରଣ, ଜଗତଗୁରୁ ଶଙ୍କରାଚାର୍ଯ୍ୟ ଓ ଗଜପତି ମହାରାଜଙ୍କ ମନ୍ତବ୍ୟ, ସରକାର ଓ ସରକାରୀ ଅଫିସର ମାନଙ୍କର କାର୍ଯ୍ୟକଳାପ, ନ୍ୟାୟାଳୟର ହସ୍ତକ୍ଷେପ, କମିଟି ଗଠନ, ପରଦା ଅନ୍ତରାଳରେ ଲୁକ୍କାୟିତ ରହିଥିବା କୋଟି କୋଟି ଟଙ୍କାର କାରବାର, ସେବାୟତମାନଙ୍କୁ ଅର୍ଥ ପ୍ରଦାନ ଆଦି ସମସ୍ତ ପରିମାପକ





ପ୍ରସଙ୍ଗଟିକୁ ଅଯଥା ଜଟିଳତା ଭତରକୁ ଟାଣି ନେଇଛ । 'ଜଗନ୍ନାଥ' ମାତ୍ର ଏକ ମୂର୍ତ୍ତି ନୁହେଁ, ଏହା ଏକ ଭାବ, ଯାହା ମୋ ଭତରେ, ଆମ ଭତରେ ତୁମ ଭତରେ ଓ ସର୍ବୋପର ଜଗନ୍ନାଥ ବଶ୍ୱାସୀ ସମଗ୍ର ବଶ୍ୱବାସୀଙ୍କ ଭତରେ ଚରନ୍ତନ ବଦ୍ୟମାନ । ଏହ ଜଗନ୍ନାଥମୟ ଭାବନା ତାଙ୍କୁ ଅର୍ଥାତ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସ୍ପର୍ଶ ପ୍ରସଙ୍ଗ ରୂପକ ସଂକୀର୍ଣ୍ଣତା ଓ ହୀନମନ୍ୟତାର ବହୁ ଉର୍ଦ୍ଧ୍ୱରେ ।

ପ୍ରତଥର ଶ୍ରୀମନ୍ଦିରରୁ ଫେରବା ବେଳେ ଉଣା ଅଧିକେ ସେଇ ଏକା ପ୍ରକାର ଅନୁଭୂତ ଓ ଭାବନା । ଫେରନ୍ତା ପଥରେ ସିଂହଦ୍ୱାର ନକଟରେ ସେହ ଗୋଟିଏ ପ୍ରକାର ନଷ୍ପତ୍ତି । ନା ଆଉ ନୁହେଁ । ଜଗନ୍ନାଥଙ୍କ ପରବାରର ସଦସ୍ୟା ହୋଇ ଯଦ ତାଙ୍କୁ ଟିକେ ଭଲରେ ଦେଖି ପାରୁନ, ତା'ହେଲେ ଆଉ ଆସିବ ବା କାହିଁକ ?

ଆଖି ଖୋଲ ଜୟବଜୟ ଦ୍ୱାର ଆଢୁଆଳରେ ଦଶୁଥିଲ୍ ଜଗନ୍ନାଥଙ୍କର ଗୋଟିଏ ଆଖି ।

ଆଖି ବନ୍ଦକଲେ ଦଶୁଥିଲ୍ ଜଗନ୍ନାଥଙ୍କର ଦୁଇଟି ଆଖି - ଜୀବନ୍ତ, ନୀରବ, ସର୍ବଦ୍ରଷ୍ଟା, ଆକର୍ଷଣୀୟ ଚକାଡ଼ୋଳା ।

ମୋ ଭତରେ ଚକାଆଖି ।

ମାର୍ଫତ - ପ୍ରଫେସର ଶ୍ରୀନବାସ ପାଠୀ,

ମିଜୋରମ କେନ୍ଦ୍ରୀୟ ବଶ୍ୱବଦ୍ୟାଳୟ, ଆଇଜଲ୍ - ୭୯୬୦୦୪

madhu1691@gmail.com





# ଘୁମୁ ଜାଣିଥିବେ



ଡା ସୌମ୍ୟରଞ୍ଜନ ମିଶ୍ର

ଖବର କାଗଜଟା ଧର ସୁଦର୍ଶନ ଆମ ଘରେ ବସିଛ, ମୁଁ ପହଞ୍ଚିଲ୍ ବେଳକୁ । ଘରେ ପାଦ ନଦେଉଣୁ ଆରମ୍ଭ କଲ୍ ସେ, ଭାଇନା, ଆଜ ଏତେ ଡେର ହେଲ୍‌ଯେ ? ମୁଁ ଆପଣଙ୍କ ଅପେକ୍ଷା କରବସିଛ । ତା'କୁ ଗ୍ଢହିଁ ପଗ୍ଚରଲ, କଣ କଛ ଜରୁରୀ କଥା ଅଛ ? ସେ କଣ ସବୁ କହଲ୍, ମୁଁ ଭଲକର ଶୁଣିପାରଲ ନାହିଁ । ବେସିନ୍ ପାଖରେ ମୁହଁରେ ପାଣିମାର ଦନଯାକର ପରଶ୍ରମକୁ ଧୋଇବାକୁ ଚେଷ୍ଟା କରୁଥିଲ ମୁଁ । ମୁହଁ ପୋଛିପୋଛ ସାରଦେଇ ଆସିବା ବେଳକୁ ସେ ଯିବାକୁ ବାହାରଛ । ବୋଧହୁଏ ମୋର ନରବତା ତାକୁ ପସନ୍ଦ ହେଲ୍‌ନାହିଁ । ହସିଦେଇ କହଲ, କହ କଣ ହେଇଛ ? ସେ ପୁଣି ଆରମ୍ଭ କଲ୍ । ନରୀହ ପ୍ରଶ୍ନଟିଏ - ଅସ୍ଥିଶଲ୍ୟ ବଭାଗର ଡାକ୍ତର ଜଣେ କଣ ପ୍ରସୂତୀଙ୍କ ଅସ୍ତ୍ରୋପଗ୍ଚର କରପାରବ ? ଖବର କାଗଜଟା ତଥାପି ତା ହାତରେ ଥିଲ୍ । ଖବରଟା ମୁଁ ବ ପଢ଼ିଥିଲ ସେଦନ । ତେଣୁ କହଲ - ସେ ଯଦ ବେସରକାରୀ ଡାକ୍ତରଖାନାରେ ଗ୍ଚକରୀ କରୁଛନ୍ତ ତ ସେମିତ କରପାରବେ ନାହିଁ । ସେ ପୁଣି ପଗ୍ଚରଲ୍, ତ ଯଦ ସରକାରୀ ହୋଇଥିବେ ? ଗୋଟିଏ ପଦରେ କହଲ, କରପାରନ୍ତ । ଦନ ସାଗ୍ର ପରଶ୍ରମରୁ ମୁକ୍ତିପାଇବା ପାଇଁ ଘରେ ପହଞ୍ଚୁ ପହଞ୍ଚୁ ସୁଦର୍ଶନର ଏ ସବୁ ପ୍ରଶ୍ନ ମୋତେ ବ୍ୟତବ୍ୟସ୍ତ କର ପକାଉଥିଲ୍ ।

ସୁଦର୍ଶନ କଛ ଚନ୍ତା କର କହଲ୍ - କେମିତ ? ତା'ହେଲେ ଏମ୍‌ବବଏସ୍ ଡାକ୍ତରମାନେ କଣ କରନ୍ତ ? ମୁଁ ହଡ଼ବଡ଼େଇ ଯାଉ ଯାଉ କହଲ, ସେମାନେ କଛ କରନ୍ତ ନାହିଁ, କନ୍ତୁ ସବୁ କରନ୍ତ । ଯଦ ଏମ୍‌ବବଏସ୍ ଡାକ୍ତରମାନେ ସବୁ କରପାରନ୍ତ ତା ହେଲେ ଦାନ୍ତ ପାଇଁ ଅଲଗା ଡାକ୍ତର କାହିଁକ ? ତାକୁ ବ ତ ଏମ୍‌ବବଏସ୍‌ରେ ପଢ଼ା ଯାଇପାରନ୍ତା ? ଏ ତ ବଡ଼ ଦାନ୍ତଭଙ୍ଗା ପ୍ରଶ୍ନ ମୁଁ ମନେ ମନେ କହଲ ।

ତଥାପି ଏତେ ସହଜରେ ହାରଯିବା ଭଳ ଲୋକଟିଏ ମୁଁ ନୁହେଁ । ଆଖି





ବନ୍ଦକରି କହିଲି - ଭାରତୀୟମାନଙ୍କର ପାନ, ଗୁଡ଼ାଖୁ, ଦୋକ୍ତା ଅଭ୍ୟାସ କାରଣରୁ ଇଂରେଜମାନେ ଭାବିଥିବେ, ଖାଲି ଏମବିବିଏସ୍ ପଢ଼ି ଦାନ୍ତ ରୋଗକୁ କାବୁ କରାଯାଇ ପାରିବ ନାହିଁ । ପେଟରୋଗ, ଛାତି ରୋଗ, ମୁଣ୍ଡ ରୋଗ ଅବା କେଉଁ କେଉଁ ଘରେ ଥାଇପାରେ କିନ୍ତୁ ଦାନ୍ତ ରୋଗ ସବୁ ଘରେ ବାହାରିବା ଥୟ । ତେଣୁ ଦାନ୍ତ ରୋଗପାଇଁ ଅଲଗା ପାଠ୍ୟକ୍ରମର ବ୍ୟବସ୍ଥା କରାଯାଇଥିବ । ଆଉ ସେଇଟା ଏ ପର୍ଯ୍ୟନ୍ତ ଚାଲି ଆସୁଛି ।

ମୋ ଉତ୍ତରରେ ସୁଦର୍ଶନ ସନ୍ତୁଷ୍ଟ ନଥିଲା । ମୁଁ ଜାଣିଗଲି । ମୋ ମୁହଁକୁ ବଲି ବଲି ହୋଇ ଚାହିଁଥିଲା ସେ । ତେଣୁ କଥାର ଖିଅ ଯୋଡ଼ିଲି । ସ୍ୱାଧୀନତା ପରେ ନେତାଏ ଭାବିଥିବେ, ଇଂରେଜମାନେ ଯାହା କରିଛନ୍ତି ନିଶ୍ଚୟ ଠିକ କରିଛନ୍ତି । ସେମାନଙ୍କ ଦୂରଦୃଷ୍ଟି ମଧ୍ୟ ଏଇୟା ଦେଖିଥିବ ଯେ, ଆଗକୁ ସରକାରୀ ମେଡ଼ିକାଲ କଲେଜ ଖୋଲିବା ଆଉ ଦାନ୍ତ ଓପାଡ଼ିବା ଭାରି ମୁସ୍କିଲ୍ ହୋଇପଡ଼ିବ । କିନ୍ତୁ ବେସରକାରୀ କଲେଜ ଛତୁ ଭଳି ଫୁଟି ଫିମ୍ପିପରି ମାଡ଼ି ଚାଲିବେ । ବିଡ଼ିଏସ୍ ପାଠ୍ୟକ୍ରମ ଖୋଲିବା ଅପେକ୍ଷାକୃତ ସହଜ ହୋଇଥିବାରୁ, ତାକୁ ଢାଲକରି ଏମ୍‌ବିବିଏସ୍ ପାଠ୍ୟକ୍ରମ ଖୋଲାଯାଇପାରିବ । ବ୍ୟକ୍ତିଗତ ଲାଭ ସହିତ ପାର୍ଟି ଚାନ୍ଦା ମଧ୍ୟ ବଢ଼ିବ । ବୋଧହୁଏ ଏଥିଯୋଗୁଁ ଦାନ୍ତ ସମସ୍ୟା ପାଇଁ ଅଲଗା ସ୍ନାତକ ପାଠ୍ୟକ୍ରମଟିଏ ଅଛି ।

ନା, ଭାଇନା... ଆହୁରି କିଛି ଗୁଢ଼ ବୈଷୟିକ ରହସ୍ୟ ନିଶ୍ଚୟ ରହିଛି । ନହେଲେ ଆମ ରାଇଜ ମୁଖିଆଟା କିଣ ଦାନ୍ତ ଡାକ୍ତରମାନଙ୍କୁ ସ୍ୱହସ୍ତରେ ନିଯୁକ୍ତିପତ୍ର ପ୍ରଦାନ କରିଥାନ୍ତେ ? ଏଥର ଉତ୍ତର ଦେବା ମୋ ପାଇଁ ସହଜ କରିଦେଲା ସୁଦର୍ଶନ । ତା'ହେଲେ ମୁଁ ସେ କଥା ଜାଣିନାହିଁ । ତୁମ୍ଭେ ଜାଣିଥିବେ । ତାଙ୍କୁ ପଚାରିଲେ ସବୁ ଜଣାପଡ଼ିବ । ସୁଦର୍ଶନ ମୋ ଉତ୍ତରରେ ସନ୍ତୁଷ୍ଟ ହେଲାକି ନାହିଁ କହିପାରିବିନି, କିନ୍ତୁ ସେ ସ୍ମିତହସଟିଏ ଦେଲା । ଏତିକି ବେଳକୁ ଘରଭିତରୁ ଶୁଭିଲା - ମୁହଁ ହାତ ଧୋଇଲଣି ନା ସେମିତି ବସିଛ ? ଖାଇବା ବଢ଼ା ହେଲାଣି ।

ମଧ୍ୟଖଣ୍ଡୀ, ଶ୍ରୀବଳଦେବ ଜୀଉ

କେନ୍ଦ୍ରାପଡ଼ା - ୭୫୪୨୧୨

ଦୂରଭାଷ : ୯୯୩୭୩୭୪୩୪୨

ଇମେଲ୍ : dr.srmishra@gmail.com



# ନୟା ନୟା ନଗଡ଼ା



ଡଃ କୁଳାଙ୍ଗାର

କିଛି ବର୍ଷତଳେ କାହାକୁ କିଛି ପାଳନ କରିବା ପାଇଁ କହିଲେ କିମ୍ବା ଆଚମ୍ବିତ କଥାଟିଏ କହିଲେ, ସିଏ ସ୍ୱତଃ ପ୍ରଶ୍ନ କରୁଥିଲା- ତୁ କହିଦେଲେ କଣ ହେଇଗଲା, କୋଉଠି ଲେଖାହୋଇଛି ଦେଖା ?

ତାକୁ ଖବରକାଗଜ କିମ୍ବା ବହିର ଛପାପୃଷ୍ଠାଟିଏ ଦେଖେଇଦେଲେ ଲୋକଟିର ମୁହଁ ବନ୍ଦ୍ । ଅର୍ଥାତ ଛପା ସମ୍ବାଦ ପ୍ରତି ଲୋକମାନଙ୍କର ଗୋଟେ ବଡ଼ିଆ ବିଶ୍ୱାସ ଥିଲା ଯାହାକୁ ଏବେ ମଧ୍ୟ ବଜାୟ ରଖିବାକୁ କିଛି ଖବରକାଗଜ ପ୍ରତିଦିନ କସରତ ଚଳେଇଛନ୍ତି ।

ଦିନକୁଦିନ ଅନିଚ୍ଛାକୃତ ଗର୍ଭଧାରଣପୂର୍ବକ ଶିଶୁଜନ୍ମ ପରି ଖବର କାଗଜମାନଙ୍କର ସଂଖ୍ୟା ଘୁଘୁ ହୋଇ ବଢ଼ିଲା । କିଛି ଖବରକାଗଜ ଲୋକବିଶ୍ୱାସର ଭରପୂର ଫାଇଦା ଉଠେଇବା ପାଇଁ ଚେଷ୍ଟା ଚଳେଇଲେ । କିଏ ଲେଖିଲା- ଅମୁକ ପ୍ରଦେଶର ସମୁକ ଗ୍ରାମରେ ଷଣ୍ଢ କ୍ଷୀର ଦେଉଛି । ପୁଣି କିଏ ଲେଖିଲା- ଅମୁକ ଜିଲ୍ଲାର ସମୁକ ଗାଁକୁ ପ୍ରତିରାତିରେ ହନୁମାନ ଆସୁଥିବାର ଶୁଣିବାକୁ ମିଳିଛି । ଆଉ ଟିକେ ଲଗାମଛଡ଼ା ହୋଇ ପୁଣି କିଏ ଲେଖିଲା- ଆଉ ମାତ୍ର କେତେଟା ଦିନ ପରେ ପୃଥିବୀ ଧ୍ୱଂସ ହୋଇଯିବ ବୋଲି ବିଶିଷ୍ଟ ସାଧକ ବାବା ହାଡୁଗମ୍ ମୁର୍ଦ୍ଦାରଜୀ କହିଛନ୍ତି ! ଯେଉଁବାବାଙ୍କୁ କେହି ଚିହ୍ନିନଥିବେ ।

ଏହା ଭିତରେ ଆରମ୍ଭ ହେଲା ଏକ ଅଘୋଷିତ





ପ୍ରତଯୋଗୀତା । ସର୍ବସାରଣଙ୍କର ସୁବଧା, ଅସୁବଧାର ଖବର ଛୁପି ବଡ଼ ହୋଇଥିବା ଖବରକାଗଜମାନେ ମଧ ଏହ ବୀଭତ୍ସ ପ୍ରତଯୋଗୀତାରେ ଅବାଂଛତ କାଗଜମାନଙ୍କ ସହ ପାଠକ ଭେଜର ପଂକ୍ତିଭୋଜନରେ ବସିଗଲେ । ଏହ କାଳରେ ଉଭହେଲା ସ୍ଥାନୀୟ ସଂସ୍କରଣ ନାମକ ଏକ ନୂଆରୋଗ ଯାହା ସବୁଆଡ଼େ ଡେଇଁଲା । ଏହରୋଗରେ ଯେତେ ପଢ଼ିଲେ ବ ପାଠକ ମାନଙ୍କର ମନ ପୂରଲା ନାହିଁ । ଗାଁରେ କଣ ହେଉଛ ସହରରେ ରହୁଥିବା ମାନ୍ୟବର ଓ ଆଜ୍ଞାମାନେ ଜାଣିପାରଲେ ନାହିଁ । ଫଳରେ ବଭନ୍ନ ସାମାଜକ - ଅର୍ଥନୈତକ ସମସ୍ୟାର ମହାସମାଧାନ କରପାରୁଥିବା ଖବରକାଗଜମାନେ ଧୀରେଧୀରେ କେବଳ କେତେ କ୍ଷଣର ମନୋରଞ୍ଜକ ଉତ୍ପାଦ ଭବରେ ପ୍ରତପାଦତ ହେଲେ । ଆଜକାଲ ଅଧିକାଂଶ ଖବରକାଗଜ କାର୍ଯ୍ୟାଳୟରେ ଅଭଧାନ ଉଣ୍ଡିଉଣ୍ଡି ଖବର ସଜାଡୁଥିବା ଏବଂ ସକରାତ୍ମକ ଖବର ଖୋଜୁଥିବା ଲୋକଙ୍କର ମରୁଡ଼ି ଦେଖାଦେଇଛ ।

ବଚରା ପାଠକ ମାନେ ନାନା ଅବର୍ଜ୍ୟା ଖବରର ଗଢ଼ଣ, ଗନ୍ଧରେ ଅଣନଃଶ୍ୱାସୀ ହୋଇ ତ୍ରାହତ୍ରାହ ଡାକ ଛାଡୁଥିଲାବେଳେ ଚକଚକିଆ ଚେହେରାନେଇ ପହଞ୍ଚିଲେ ଟିଭ ଚ୍ୟାନେଲମାନେ । ରାଜନୈତକ ହଟଚମଟ, ସିନେମାର ରୂପଲାବଣ୍ୟ ଓ ଖେଳାଳୀଙ୍କ ଖେଳହେଲା ଏମାନଙ୍କର କଂଚାମାଲ୍ । ଏହାବାଦ୍ ଯାହା ରହଲା ସବୁ ଅଳଆ । ଏହ ଚ୍ୟାନେଲ୍ ମାନେ ଧିରେ ଧିରେ ଲୋକମାନଙ୍କ ମୁଣ୍ଡରେ ବସିଲେ । ବସିବାର ସବୁଠାରୁ ବଡ଼ କାରଣଟି ହେଲା ଏମାନେ ତଟକା ଖବର ଦେଖେଇବାର ଦାବୀକଲେ ଏବଂ ଯାହା ଦେଖେଇଲେ ସବୁଆଡ଼େ ଗୋଟିଏ ଖବର ଦେଖେଇଲେ ।

ଗଣମାଧମ ବ୍ୟବସାୟରେ ଯିଏ ଲୋକଙ୍କୁ ବୋକା ବନେଇ ପାରଲା ସିଏ ତଷ୍ଠିଲା ଆଉ ଯିଏ ଲୋକଙ୍କୁ ବୋକା ଭାବଲା ସିଏ ମଲା । ଖବର କାଗଜମାନେ ଗୋଟିଏ ଦୁର୍ଘଟଣାରେ ଭନ୍ନଭନ୍ନ ମୃତ୍ୟୁସଂଖ୍ୟା ଲେଖିଲା ବେଳକୁ ଟିଭବାଲା ଦେଖେଇଦେଲେ ହେଇ ଦେଖନ୍ତୁ ଦୁର୍ଘଟଣାସ୍ଥଳ ! ଲୋକେ କ୍ୟାମେରା ସୌଜନ୍ୟରୁ





ନିଜ ଆଖିରେ ଦେଖିଲେ କେତେ ମରିଛନ୍ତି, କେତେ ଶବ ପଡ଼ିଛି !!

ମଣିଷ ତ ଏକ ଅଳସୁଆ ପ୍ରାଣୀ ଭାବରେ ଖ୍ୟାତ । ଖବରକାଗଜ ପଢ଼ିବାଠାରୁ ଟିଭି ଦେଖିବା ସହଜ । ଖବରକାଗଜ ଆଣ, ପୃଷ୍ଠା ଖୋଲ, ଉଣ୍ଡିଉଣ୍ଡି ପଢ଼, ବଳକା ଖବର ପାଇଁ ପୁଣି ଅନ୍ୟ ପୃଷ୍ଠା ଖୋଲ ଇତ୍ୟାଦି । କିନ୍ତୁ ଟିଭି ଲଗାଅ ଓ ସହଜ । ତେଣୁ ସିଏ ବେଶୀ ଟିଭି ଦେଖିବାକୁ ପସନ୍ଦ କଲା । ଖବରକାଗଜ ଅପେକ୍ଷା ଟିଭି ଖବର ସତେଜ ଏବଂ ସତ ବୋଲି ତା ମୁଣ୍ଡରେ ପଶିଲା । ସାନରୁ ବଡ଼, ସାଧାରଣରୁ ଅଫିସର, କ୍ରେତାରୁ ନେତା ସମସ୍ତେ ଟିଭିକୁ ବେଶୀ ବିଶ୍ୱାସ କଲେ । ଟିଭି  ଯଦି କହିଲା- ଅମୁକ ଜାଗାରେ ଝିଅକୁ ବାପାମାଆ ପୂଜାକଲେ ଧନଲାଭ ହେଉଛି ବୋଲି ଗୁଜବ ସୃଷ୍ଟି ହୋଇଛି, ଲୋକେ ଗୁଜବ ଶବ୍ଦଟିକୁ ଶୁଣିବାକୁ ଅପେକ୍ଷା ନକରି ଝିଅର ପାଦତଳେ ପଡ଼ିଲେ । ଲୁଣର ହୋର୍ଡିଂ ହୋଇଛି, ଲୁଣ ମିଳି ନ ପାରିବାର ମିଥ୍ୟା ପ୍ରଚାର ହେଉଛି ବୋଲି ଶୁଣି ମଧ୍ୟ ଲୋକେ ଘରେ ବସ୍ତାବସ୍ତା ଲୁଣ କିଣିନେଇ ଥୋଇଲେ !

ଧିରେ ଧିରେ ଟିଭିର ମହାତ୍ମ୍ୟ କାରଣରୁ ଖବର କାଗଜରେ ଛପା ଖବରକୁ ସବୁ ମହଲରେ ଅପେକ୍ଷାକୃତ କମ୍ ଗୁରୁତ୍ୱ ଦିଆଗଲା । ତେଣୁ ରାଜନୀତି, ରୋମାନ୍ସ ଓ ଖେଳର ଭୋଜି ଖୁଏଇ ଦୃଶ୍ୟଶ୍ରାବ୍ୟ ଗଣମାଧ୍ୟମ ଲୋକଙ୍କୁ ମତୁଆଲା କରି ରଖିଲା । ଏହା ବହୁଜନବିଦିତ କି ମଣିଷକୁ କୁକୁର କାମୁଡ଼ିଲେ ଟିଭି ଦେଖାଏନା ବରଂ କୋଉଠି ଯଦି ମଣିଷଟିଏ କୁକୁରକୁ କାମୁଡ଼ିଛି ସେଇ କଥାକୁ ଟିଭି ଚ୍ୟାନେଲମାନେ ବାରଂବାର ତେରଂବାର ଦେଖାନ୍ତି । ଖାଦ୍ୟଥାଳୀରେ ପାମ୍ପଡ଼ ପରି ଅଧିକାଂଶ ନ୍ୟୁଜ୍‌ଚ୍ୟାନେଲ ୨୪ ଘଂଟାରେ ଥରେ ଅଧାଘଂଟା ପାଇଁ ଗାଁ ଖବର ନାଁରେ କିଛି ଅଘଟଣର ଦୃଶ୍ୟ ଦେଖାନ୍ତି । ସେଇ ଅଘଟଣ ଖବରରୁ ନଗଡ଼ା ମାମଲା ଆରମ୍ଭ । କେତେଟା ଦିନ ଭିତରେ ଯଦି ଯାଜପୁର ଜିଲ୍ଲାର ଏହି ପାହାଡ଼ିଆ ଗାଁରେ ୨୦ରୁ ଅଧିକ ଶିଶୁ ପୃଷ୍ଟିହୀନତାର ଶୀକାର ହୋଇ ନଥାନ୍ତେ ତେବେ ଗାଁର ନାଆଁଟି





ଏତେ ପରଚିତ ହୋଇପାର ନଥାନ୍ତା ।

ଏହ ପ୍ରସଙ୍ଗକୁ ଆଲୋଚନାକୁ ଆସିବା ପୂର୍ବରୁ ଏତେସବୁ ଶବ୍ଦ ନଷ୍ଟ କରବାର ଉଦ୍ଦେଶ୍ୟ ହେଲ୍ କ- ନଗଡ଼ା ପର ବହୁ ଅନୁନ୍ନତ ଗାଁର ଚତ୍ର ପ୍ରତଦନ ବହୁ ଖବରକାଗଜରେ ପ୍ରକାଶିତ ହୋଇଛ କନ୍ତୁ ଏତେ ହୋ ହାଲ୍ଲା ହୋଇନ । କାରଣ ଆମେମାନେ, ଆମ ବାବୁମାନେ କେହ ଏହାକୁ ଗୁରତ୍ୱ ଦେଇନେ ।

ଗୋଟିଏ ଅଘଟଣ ପରେ ସ୍ୱଭାବବଶତଃ ନାନା ଖବର ବାଜଲ୍ । ନଗଡ଼ାରେ ଏୟା ନାହିଁ ସେୟା ନାହିଁ । ୟେ ଯାଏନ ସେ ଯାଏନ । ଏହା ମିଳନ ତାହା ମିଳନ ।

ଟିଭରେ ବାହାରବା ପାଇଁ ଦଳଦଳ ନେତା ଓ ସମାଜସେବୀମାନେ ନଗଡ଼ା ଧାଇଁଲେ । ସତେ ଯେମିତ ସେମାନେ ଏମିତ ଅନୁନ୍ନତ ଗାଁ କୋଉଠି ଦେଖିନାହାନ୍ତ ! ସତକଥା ହେଲ୍ ସାର୍ ଓଡ଼ିଶାର ଅଧିକାଂଶ ବ୍ଲକରେ ନଗଡ଼ା ପର ଅସଂଖ୍ୟ ଗାଁ ଅଛ । ପଶ୍ଚିମ, ଉତ୍ତର, ଦକ୍ଷିଣ ଓ ଉପକୂଳରେ ଭାଗଭାଗକର ଯେଉଁଆଡ଼େ ଯିବ ନଗଡ଼ାର ବଡ଼ଭାଇ ପର ଗାଁମାନଙ୍କୁ ଦେଖିବାକୁ ପାଇବ । ସେକଥାକୁ ଧ୍ୟାନ ନଦେଇ ସମସ୍ତେ ପଡ଼ିଉଠି ନଗଡ଼ା ଧାଇଁଛନ୍ତ !

ହେ ନଗଡ଼ାଭମୁଖୀ ଭାଇ ଓ ଭଉଣୀମାନେ ! ଟିକେ ସାମାଜକ - ଅର୍ଥନୈତକ ସର୍ଭେ ରପୋର୍ଟ ପଢ଼ିବାରେ ସମୟ ନଷ୍ଟକର । ଟିକେ ଅଭୟାରଣ୍ୟ ଅଧୀନରେ ଥିବା ଗାଁର ତାଲକାକୁ ଗୃହଁ । ଥରେ ଜଲ୍ଲାଙ୍ଗାରୀ ମାତୃ ମୃତ୍ୟୁହାର ଓ ଶିଶୁ ମୃତ୍ୟୁହାର ହସାବକୁ ବୁଝିଦେଖ । ଜଳସେଚତ ଜମିର ହସାବକୁ ଉଖାର ଦେଖ । ଓଡ଼ିଆ ମଣିଷର ମୁଣ୍ଡପିଚ୍ଛା ଆୟ ହାରକୁ ହାତରେ ଧର ନତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀର ତାଲକାକୁ ତଉଲ ଦେଖ ହେ ଆଜ୍ଞାମାନେ ! ସାଦା ପୋଷାକ ପିନ୍ଧି ଟିକେ ସରକାରୀ ଡାକ୍ତରଖାନା ଯାଇ ଚକସା ହୁଅ । ପୁଲସି ଥାନା ଯାଇ ଟିକେ ମାମୁଁଙ୍କର ଅଭ୍ୟର୍ଥନା ପାଅ । ନୂଆଖାତା ଖୋଲବା ପାଇଁ ଟିକେ ବ୍ୟାଙ୍କ୍‌କୁ ଯାଅ । ମଳମୁଣ୍ଡ ହୋଇ ଖୋଲଗୁଡରେ ନାନା ଯୋଜନାର କାର୍ଯ୍ୟାଳୟକୁ ଯାଇ ହତାଧିକାରୀ





ହେବାର ପ୍ରୟାସ ଥରେ କରଦେଖ ! !

ତୁମେ ନଜେ କହବ- ନଗଡ଼ା ଦେଖୃବାକୁ ଏତେବାଟ ଯିବା କାହିଁକ ? ଶହଶହ ନଗଡ଼ା ଗାଆଁ ଯେ ଆମ ଘରପାଖରେ ଅଛି, ଏ କଥାକୁ ସ୍ୱୀକାର କରବାକୁ କାହାର ଦମ୍ ଅଛ କ ? ? ତା ହେଲେ ଗୋଟେ ନଗଡ଼ାର ବକାଶ ପାଇଁ ଏତେ ଟାସ୍କଫୋର୍ସ ଗଠନ ଓ ତନାଘନା କାହିଁକ ?

ଆପଣମାନେ ବୋଧେ ଏୟା ଗୃହାନ୍ତ କ ନଗଡ଼ା ନ'ସରୁ ! ଏ ରାଜନୈତକ ଯଜ୍ଞରେ ଏମିତ ଘିଅ ଢାଳବାର ସୁଯୋଗ ମିଳୁଥାଉ । ଏକାଥରକରେ ସବୁଆଡ଼େ ଉନ୍ନତର ପ୍ରଭବ ପାଇଁ ପ୍ରୟାସ ହେଲେ ମଝିରେ ମଝିରେ କୋଉଠିକ ଯାଇ ତମେମାନେ ଆଉ ଟିଭ ପରଦାରେ ମୁହଁ ଦେଖେଇବ ? ? ?

ମାର୍ଫତ- ଗାନ୍ଧୀ ପଣ୍ଡା, କଳାଘର-ଲେମ୍ବୋ, ଅଲଗ, କଟକ-୭୫୪୦୩୨

କ୍ରଂ କ୍ରଂ- ୯୩୩୮୫୮୧୩୦୯ ଇମେଲ୍: dr.kulangar@gmail.com

ଏହ ଇ-ପତ୍ରକା ଆହ୍ୱାନ ଓଡ଼ିଆ ପରବାର ଦ୍ୱାରା ସମ୍ପୂର୍ଣ୍ଣ ନଃଶୁଳ୍କ ବତରଣ ଉଦ୍ଦେଶ୍ୟରେ ଡା ଜ୍ୟୋତ ପ୍ରସାଦ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ www.aahwaan.com





# ହସ ଲୁଚିଗଲା ଆଖି ଲୁହରେ



ପ୍ରଶାନ୍ତ କୁମାର ନାଥ

ପପୁ ସବୁବେଳେ ହସ ହସ ମୁହଁ, କେତେବେଳେ ତାକୁ କେହି ଦେଖିନାହାନ୍ତି ମନ ଦୁଃଖ କରିବାର । ତାକୁ ଯିଏ ଯାହା ପଚାରିଲେ ବି ସ୍ମିତ ହସଟିଏ ହସି ଦେଇ ତାର ଉତ୍ତର ଦେଇଥାଏ । ତାର ଏହି ହସ ଦେଖି ତାକୁ ସମସ୍ତେ ଭଲ ପାଆନ୍ତି । ତାକୁ କେହି ଗାଳି ଦେଲେ ବି ସେ କେବେ ଖରାପ ମନେ କରେନି । ସବୁବେଳେ ହସ ହସ ମୁହଁରେ ସମସ୍ତଙ୍କୁ ଅଭିବାଦନ ଜଣାଏ । ସର୍ବଦା ପ୍ରଫୁଲ୍ଲ ରହୁଥିବା ପପୁ ଆଖିରେ ଆଜି ଲୁହର ଧାର ।

ସବୁବେଳେ ହସୁଥିବା ପପୁକୁ ଦେଖି ତାକୁ ନିଜର ମନ ଦେବାପାଇଁ ଆକୁଳ ଝିଅମାନେ । ତା ପାଇଁ ରୀତିମତ ପ୍ରତିଦ୍ୱନ୍ଦିତା ମଧ୍ୟ ହୁଏ ବେଳେ ବେଳେ ଝିଅମାନଙ୍କ ମଧ୍ୟରେ । କେହି କେହି ଜାଣିଶୁଣି ତା ମନକୁ ଦୁଃଖ ଦେବାକୁ ଚେଷ୍ଟା କରିଲେ ବି ସଫଳ ହୁଏନି ।

ପପୁ ବହୁତ ଭଲ ପଢ଼େ । ସେଇଥିପାଇଁ ସମସ୍ତଙ୍କ ପସନ୍ଦର ପାତ୍ର ସେ । ହେଲେ ସେ ବି ଦିନେ ପ୍ରେମ ଆଗରେ ହାର ମାନିଥିଲା । ଜାଣିପାରିଲାନି କେତେବେଳେ ସେ ବବିତାର ପ୍ରେମରେ ପଡ଼ିଗଲା ।

ପିଲାଦିନରୁ ସାହିତ୍ୟରେ ରୁଚି ରଖୁଥିବା ପପୁର କବିତା ଅନେକ ପ୍ରତିଷ୍ଠିତ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । ଅନେକ ସାହିତ୍ୟ ସଭା ଓ କବି ସମ୍ମିଳନୀରେ ସେ ଯୋଗଦେଇଥାଏ । ଏମିତି ଏକ କବି ସମ୍ମିଳନୀ ହେଉଥିବା ମକର ସଂକ୍ରାନ୍ତିରେ ଆଉ ସେଇଠି ସେ ଭେଟିଥିଲା ବବିତାକୁ । ବବିତା ଥିଲା ଜଣେ କବୟିତ୍ରୀ ଆଉ ସେହି ସମ୍ମିଳନୀରେ ସେ କବିତା ପାଠ କରିଥିଲା, 'ମୋ ସ୍ୱପ୍ନର ରାଜକୁମାର' । କବିତାଟି ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ସେହି କବିତା ପାଠରେ ପପୁ ପଢ଼ିଥିଲା ନିଜ କବିତା, 'ମୋ ମନ ମଇନା', ଯାହା ସମସ୍ତଙ୍କ ଦ୍ୱାରା ସମ୍ମାନିତ ହୋଇଥିଲା । କବି ସମ୍ମିଳନୀରେ ସଫଳତା ପାଇଥିବା ପପୁକୁ ସମସ୍ତେ ଅଭିନନ୍ଦନ ଜଣାଇଥିଲେ, ବବିତା ମଧ୍ୟ । ସେହି ଅଭିନନ୍ଦନରୁ ଦୁଇ ଗ୍ୱରପଦ





କଥାବାର୍ତ୍ତା, ପୁଣି ବାର୍ତ୍ତାଳାପ ଓ ଫୋନ୍ ନମ୍ବର ଆଦାନପ୍ରଦାନ ମଧ୍ୟ ହୋଇଥିଲା ।

ସେହ ସମ୍ମିଳନୀ ପରେ ଅନେକ ସ୍ଥାନରେ ସେମାନେ ଏକତ୍ରିତ ହୋଇ କବତା ପାଠ କରଛନ୍ତି । ସେହ ଏକାଠି ମିଶିବା, କବତା ପାଠ କରବା ଜନତ ବନ୍ଧୁତା ଯେ କେତେବେଳେ ପ୍ରେମରେ ପରଣତ ହୋଇଗଲା ତାହା ଉଭୟେ ଜାଣି ପାରନଥିଲେ । ବବତାକୁ ପାଇବାପରେ ପପୁ ଯେ ବହୁତ ଆନନ୍ଦିତ ଥିଲା ଏଥିରେ ଦ୍ୱମତ ନଥିଲା ।

ଏମିତ ହସଖୁସିରେ ଦନେ ବତୁଥିବା ସମୟରେ ଦନେ ଦୁର୍ଘଟଣାର ଶୀକାର ହୋଇଥିଲା ପପୁ । ଡାହାଣ ଗୋଡ଼ ଭଙ୍ଗିଯାଇଥିଲା । ହସପିଟାଲ ବେଡ଼ରେ ପଡ଼ି ପଡ଼ି ନଜ ଖୁସିର ଦନକୁ ମନେ ପକାଇବା ଛଡ଼ା ଆଉ କଛ କାମ ନଥିଲା ପପୁର । ସ୍ୱାସ୍ଥ୍ୟହାନୀଜନତ କାରଣରୁ ବୋଧହୁଏ ସେ ଅନେକଦନ ବବତା ସହ ସମ୍ପର୍କ କରପାରନଥିଲା । ଅବଶ୍ୟ ସେ ସମୟ ସମୟରେ ଫୋନ କରେ, କନ୍ତୁ ବବତା ଫୋନ୍ ଉଠାଉନଥିଲା । ପପୁ ସବୁବେଳେ ଭାବୁଥିଲା ସେ ହୁଏତ ବ୍ୟସ୍ତଥିବ । କନ୍ତୁ ଦନକୁ ଦନ ତା ମନକୁ ବବତାର କଥା ବ୍ୟଥିତ କରବାକୁ ଲାଗିଲା । ମନେ ହେଉଥିଲା ବବତା ସତେ ଯେମିତ ତାକୁ ଅବହେଳା କରୁଛ । ସେ ହସ ଭୁଲ ଯାଉଥିଲା । ତଥାପି ସମସ୍ତଙ୍କ ସମ୍ମୁଖରେ ସେ କେବେ ବ ନଜ ଦୁଃଖ ଜଣାଇନଥିଲା ।

ସେ ଦନ ସେ ହସପିଟାଲ୍ ରୁ ବାହାର ଆସୁଥିବା ବେଳେ ହଠାତ୍ ଦେଖା ହୋଇଥିଲା ବବତା ସହ । ଅବଶ୍ୟ, ସେ କଛ ଦୂରରେ କାରରେ ବସିଥିଲା । ତା ପାଖକୁ ଶୀଘ୍ର ଶୀଘ୍ର ଚାଲିଯିବାକୁ ପ୍ରଚେଷ୍ଟା କରୁଥିବା ପପୁ ବଫଳ ହେଉଥିଲା, ହେଲେ ତା ଦୃଷ୍ଟିରେ ପଡ଼ିଥିଲା ବବତା ସୀମନ୍ତରେ ଲାଗିଥିଲା ନାଲ ସିନ୍ଦୁର, ଆଉ ତା ହାତର ଶଙ୍ଖା । ପପୁକୁ ମନେ ହେଉଥିଲା ତାର ଉଭୟ ଗୋଡ଼ ଭଙ୍ଗିଯାଉଛ, ପାଦତଳୁ ଭୂମି ଖସି ଖସି ଯାଉଛ, ଆଉ ସେ ହସ କଣ ଭୁଲଯାଇ ଚତ୍କାର କର କାନ୍ଦି ଉଠିଥିଲା ।

ସୁନ୍ଦରପୁର, ଉତ୍ତରକୂଳ ହାଟ, ପ୍ରୀତପୁର, ଯାଜପୁର

ଦୂରଭାଷ - ୮୮୯୨୩୦୧୧୪୩



# ମୁଖଲିଙ୍ଗମ୍



ଲିଙ୍ଗରାଜ ପ୍ରସାଦ ପଟ୍ଟନାୟକ

ମଧୁକେଶ୍ୱର ମନ୍ଦିର

ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ୍ ଜିଲ୍ଲାରେ ବଂଶଧାରା ନଦୀର ପଶ୍ଚିମ କୂଳରେ ମୁଖଲିଙ୍ଗମ ଅବସ୍ଥିତ । ଅତୀତର ଗୌରବମୟ କଳିଙ୍ଗନଗରର ଏହା ଅଂଶବଶେଷ । ପୂର୍ବଘାଟ ଗଙ୍ଗବଂଶର ଏହା ରାଜଧାନୀ ଥିଲା । ଖ୍ରୀଷ୍ଟାବ୍ଦ ପଞ୍ଚମ ଶତାବ୍ଦୀର ଶେଷାର୍ଦ୍ଧ ବେଳକୁ ପୂର୍ବଗଙ୍ଗ ବଂଶର ସ୍ଥାପନ ହୋଇଥିଲା । ଗଙ୍ଗବଂଶର ପ୍ରମୁଖ ଶାସକ ଶ୍ରୀ ଅନନ୍ତବର୍ମନ୍ ଚୋଡ଼ଗଙ୍ଗଦେବ (ଖ୍ରୀ ୧୦୭୮-୧୧୫୦) ନିଜ ସାମ୍ରାଜ୍ୟର ଉତ୍ତରରେ ଅବସ୍ଥିତ ଉତ୍କଳକୁ ଜୟ କରି ଏଠାରେ ଗଙ୍ଗବଂଶର ସ୍ଥାପନ କରିଥିଲେ ।

ଉତ୍ତର ଆନ୍ଧ୍ରପ୍ରଦେଶରେ ଅବସ୍ଥିତ ମୁଖଲିଙ୍ଗମର ପ୍ରମୁଖ ମନ୍ଦିରମାନଙ୍କ ମଧ୍ୟରେ ଅନ୍ୟତମ ହେଉଛି ମଧୁକେଶ୍ୱର ମନ୍ଦିର । ଆନ୍ଧ୍ରପ୍ରଦେଶରେ ରହିଥିବା ସତ୍ତ୍ୱେ ଏହି ମନ୍ଦିର ସମ୍ପୂର୍ଣ୍ଣତଃ ଓଡ଼ିଶୀୟ କାରୁକାର୍ଯ୍ୟ ଦ୍ୱାରା ନିର୍ମିତ ହୋଇଥିଲା । ଐତିହାସିକ ଏବଂ ମନ୍ଦିର ଶିଳ୍ପକଳା ଉପରେ ଗବେଷଣା କରୁଥିବା ଶ୍ରୀ ବିଦ୍ୟା ଦାହେଜାଙ୍କ ମତରେ ଏହି ମନ୍ଦିରକୁ ଉତ୍କଳୀୟ ସ୍ଥାପତ୍ୟ କଳାର ବିଶେଷ ନିଦର୍ଶନ ବୋଲି କୁହାଯାଇ ପାରିବ । ଅନନ୍ତବର୍ମା ଚୋଡ଼ଗଙ୍ଗଦେବଙ୍କ ଖ୍ରୀ ୧୧୧୨ର କୋର୍‌ଣୀ ତାମ୍ରପତ୍ର ଅନୁସାରେ ଏହି ମନ୍ଦିର କାମର୍ଣ୍ଣାଭ ଦ୍ୱିତୀୟଙ୍କ ଦ୍ୱାରା ଶିବଙ୍କ ଆରାଧନା ଉଦ୍ଦେଶ୍ୟରେ ନିର୍ମାଣ କରାଯାଇଥିଲା । ଏହା ବ୍ୟତୀତ ଅନ୍ୟ କୌଣସି ପ୍ରମାଣ ଉପଲବ୍ଧ ନାହିଁ । ମନ୍ଦିରର ନିର୍ମାଣର କଳାକୁ ଅନୁଧ୍ୟାନ କଲେ ଏହା ନବମ ଶତାବ୍ଦୀରେ ନିର୍ମାଣ ହୋଇଥିବା ପରି ଜଣାପଡ଼େ ।







ନକଟ ଅତୀତରେ ଏହ ମନ୍ଦିର ପ୍ରାଚୀରରେ ଲାଗିଥିବା ମୋଟା ଚୁନ ପ୍ଲାଷ୍ଟରକୁ ଅଲଗା କରାଯାଇଛି । ଅନେକ ଶତାବ୍ଦୀର ଚୁନ ପ୍ରଲେପନ ଦ୍ୱାରା ମନ୍ଦିରର ପ୍ରକୃତ କାରୁକାର୍ଯ୍ୟ ଲୁଚ ରହଥିଲା ଯାହା ବର୍ତ୍ତମାନ ସ୍ପଷ୍ଟ ଦେଖାଯାଉଛି । ଏଥିରୁ ଏହ ମନ୍ଦିରର ଭବ୍ୟ ନର୍ମାଣ ବଷୟରେ ଜଣାପଡ଼େ ।

ମନ୍ଦିରକୁ ଚତୁଃପାର୍ଶ୍ୱରୁ ଏକ ସୁଉଚ୍ଚ ପ୍ରାଚୀର ଘେର ରହଛି । ଏବଂ ଏହ ପ୍ରାଚୀରରେ ମନ୍ଦିରରେ ପ୍ରବେଶ ହେତୁ ଦୁଇଟି ଦ୍ୱାର ରହଛି । ପୂର୍ବଦଗକୁ ମୁଖ କରଥିବା ଏହ ମନ୍ଦିରରେ ପ୍ରବେଶ ପାଇଁ ପୂର୍ବ ଓ ଦକ୍ଷିଣ ଦଗରେ ଦ୍ୱାରମାନ ରହଛି । ପୂର୍ବଦ୍ୱାରକୁ ଖାଖରା ଦେଉଳ ଭଳ ଗଢ଼ାଯାଇଛି ଏବଂ ଏହାର ପ୍ରବେଶ ଦ୍ୱାରର ଉପରେ ତନୋଟି ଅମଳକ ରହଛି । ଭୁବନେଶ୍ୱରରେ ଥିବା ଅନେକ ମନ୍ଦିର ସମାନ ନର୍ମାଣ କରାଯାଇଛି । ତଥାପି ଏହ ମନ୍ଦିର ଉପରେ ଦାକ୍ଷିଣାତ୍ୟର ମନ୍ଦିର ନର୍ମାଣ ଶୈଳୀର ପ୍ରଭାବ ଦେଖିବାକୁ ମିଳେ । ପୂର୍ବ ଦ୍ୱାରର ଶୈଳୀ ପିଢ଼ା ଦେଉଳ ଭଳ ହୋଇଛି । ଏହା ବ୍ୟତୀରେକ ମନ୍ଦିରର ଏକ ଭତର ପ୍ରାଚୀର ମଧ୍ୟ ରହଛି ।



ମନ୍ଦିରଟି ପଞ୍ଚାୟତନ ଆକାରରେ ହୋଇଛି । ମନ୍ଦିର ମୁଖ୍ୟ ଭାଗ ବମାନ ବା ଦେଉଳ, ମୁଖଶାଳା ରହଛି । ଏହା ବ୍ୟତୀତ ଚାରେଟି କ୍ଷୁଦ୍ରମନ୍ଦିର ଚତୁଃପାର୍ଶ୍ୱରେ ରହଛି । ଏହା ସମେତ ମନ୍ଦିରର ଦକ୍ଷିଣ, ପଶ୍ଚିମ ଏବଂ ଉତ୍ତର କୋଣରେ ତନୋଟି ଖାଖରା ମନ୍ଦିର ରହଛି । କାଳକ୍ରମେ ଅନେକ ଛୋଟବଡ଼ ମନ୍ଦିର ନର୍ମାଣ ହୋଇଛି । ମନ୍ଦିର ବେଢ଼ାରେ ସ୍ଥାନେ ସ୍ଥାନେ ଭଙ୍ଗା ମୂର୍ତ୍ତି ପଡ଼ିରହଛି, ସେ ମଧ୍ୟରେ ବଷ୍ଣୁଙ୍କ ଏକ ମୂର୍ତ୍ତି ଅନନ୍ୟ ।

ମୁଖ୍ୟ ମନ୍ଦିର ବା ଦେଉଳ ନର୍ମାଣରେ କଞ୍ଚିତ ପରବର୍ତ୍ତନ ଦେଖାଯାଏ । ମନ୍ଦିରର ବାଡ଼ ବା ପ୍ରାଚୀର ତ୍ରିରଥ ଆକାରରେ ନର୍ମାଣ ହୋଇଛି । ପଭାଗ ବା ମନ୍ଦିରର ତଳଭାଗ ମଧ୍ୟ ତନୋଟି ଭାଗରେ ନର୍ମିତ ହୋଇଛି, ଯାହା ଉତ୍କଳୀୟ ମନ୍ଦିର ନର୍ମାଣ କଳାରେ ଦେଖାଯାଏ ନାହିଁ । ଏହା ବ୍ୟତରେକ ମନ୍ଦିରର ପାର୍ଶ୍ୱରେ କୌଣସି ପାର୍ଶ୍ୱଦେବତା ସ୍ଥାନ ପାଇନାହାନ୍ତି । ମନ୍ଦିର ସ୍ଥଳଭାଗରୁ ୭୦ ଫୁଟ୍ ଉଚ୍ଚ ଯାଏଁ ନର୍ମିତ ହୋଇଥିବା









ସତ୍ତ୍ୱେ ଏହାର ପାର୍ଶ୍ୱରେ କୌଣସି ମୂର୍ତ୍ତି ନାହିଁ । ମନ୍ଦିରର ଶୀର୍ଷଭାଗ ବା ଶିଖର ମଧ୍ୟ କୋଡ଼ିଏଟି ପିଢ଼ାରେ ନର୍ମିତ ହୋଇଛି । ଏବଂ ଏହା ସବୁର ମଧ୍ୟରେ ରହଛି ପ୍ରମୁଖ କେନ୍ଦ୍ରୀୟ ଅଂଶ ଯେଉଁଠି ଏହ ବଜ୍ରମସ୍ତକ ନର୍ମାଣ ହୋଇଛି । ବଜ୍ରମସ୍ତକ ଦୁଇଟି ଚୈତ୍ୟ ଆକାରରେ ନର୍ମିତ ହୋଇଛି । ଏହାର ଚତୁର୍ପାର୍ଶ୍ୱରେ ଗଣେଶ, ଲକୁଲଶ, କାର୍ହିକେୟ, ହର୍ହର, ମହଷାସୁରମର୍ଦ୍ଦିନୀ ଏବଂ ଶିବଙ୍କ ଭକ୍ସ୍ଥରମୁର୍ତ୍ତି ସ୍ଥାପିତ ହୋଇଛି ।

ମସ୍ତକ ବା ଶୀର୍ଷ ଭାଗରେ ବେକ୍ଷ ଏବଂ ଅମଳକ ରହଛି, ଏଥିରେ ଅମଳକ, ଖପୁର, କଳସ ଏବଂ ଆୟୁଧ ଯଥା ତ୍ରଶୂଳ ରହଛି । ଶୀର୍ଷରେ ରହଥିବା ଦୁଇଟି ଅମଳକ ଉତ୍କଳୀୟ ମନ୍ଦିର କଳାରେ ଦେଖାଯାଏ ନାହିଁ । ସେହପର ଏଠାରେ ଥିବା ଗୃରେଟି ସିଂହ ଦାକ୍ଷିଣାତ୍ୟର ମନ୍ଦିର କଳାରେ ଦେଖାଯାଏ ନାହିଁ ।

ମନ୍ଦିରର ମୁଖଶାଳା ଏକ ଚତୁର୍କୋଣୀୟ କୋଠରୀ, ଯାହାର ଛାତ ସମତଳ । ଏହା ଏକ ନମ୍ନ ତଳ ଉପରେ ଅବସ୍ଥିତ । ଏହ କୋଠରୀର ଚତୁର୍ପାଶ୍ୱରେ  ରେଖା ଦେଉଳ ନର୍ମିତ ହୋଇଛି, ଯାହା ଭୁବନେଶ୍ୱରରେ ନର୍ମିତ ଅନେକ ମନ୍ଦିରରେ ଦେଖାଯାଏ । ଏଠାରେ ଦେବୀଦେବତାଙ୍କ ମନ୍ଦିର ରହଛି, ଯଥା କାର୍ତ୍ତିକେୟ, ଦୁର୍ଗା, ବରାହ, ଗଙ୍ଗାଧରମୁର୍ତ୍ତୀ, ଶିବ, ନୃସିଂହ ଏବଂ ନଟରାଜ । ଏହା ବ୍ୟତୀତ ମୁଖଶାଳାର ବାହ୍ୟପ୍ରାଚୀରରେ ଶିବଙ୍କ ଦ୍ୱାରା ଅନ୍ଧାସୂରବଧ, ମୃଗ ଧାରଣ, ଅଜା-ଏକପାଗ, ହରହର, ଇନ୍ଦ୍ର, ଗରୁଡ଼, ସ୍ୱସ୍ତିକ ଆଦ ମୁର୍ତ୍ତିମାନ ରହଛି । ମୁଖଶାଳାରେ ଦୁଇ ଧାଡ଼ିରେ ବାରଗୋଟି ସ୍ତମ୍ଭ ରହଛି । ପ୍ରତ ଧାଡ଼ିରେ ଡନୋଟି ଲେଖାଏଁ ସ୍ତମ୍ଭ ଛାତକୁ ଲାଗିଛି ।

ମନ୍ଦିରର ପୂର୍ବଦଗରେ ଏକ ବଶାଳ ପ୍ରବେଶଦ୍ୱାର ରହଛି, ଏବଂ ଦକ୍ଷିଣରେ ସାନ ଦ୍ୱାର ରହଛି । ଉତ୍ତର ଦ୍ୱାରରେ ଝରକା ରହଛି । ମନ୍ଦିର ବେଢ଼ାରେ ଅନେକ ଭଗ୍ନପ୍ରତମାମାନ ପଡ଼ିରହଛି । ମନ୍ଦିର ବେଢ଼ାରେ ଥିବା ସମସ୍ତ ମନ୍ଦିର ଶିବଙ୍କ ଉଦ୍ଦେଶ୍ୟରେ ନର୍ମିତ ହୋଇଛି । ଏବଂ ପ୍ରତ୍ୟେକ ମନ୍ଦିର ସମ୍ମୁଖଭାଗରେ ନନ୍ଦି ରହଛନ୍ତି । ଏହା ପ୍ରାୟତଃ ଦକ୍ଷିଣରେ ଥିବା ଅନେକ ମନ୍ଦିରରେ ଦେଖାଯାଏ । ମନ୍ଦିରର ଛାତର ତଳଭାଗରେ ଅଷ୍ଟଗ୍ରହ ଛବ ରହଛି, ଯାହା ଓଡ଼ିଶାର ଅନେକ ମନ୍ଦିରରେ ଦେଖିବାକୁ ମିଳେ । ଆଶ୍ଚର୍ଯ୍ୟର ବଷୟ ଏହ ଗ୍ରହମାନଙ୍କ ମଧ୍ୟରେ କେତୁର





ଅବସ୍ଥିତ ଦେଖାଯାଇନାହିଁ । ଅନ୍ୟତ୍ର ନବଗ୍ରହ ଦେଖିବାକୁ ମିଳୁଥିବା ବେଳେ ଏଠାରେ ଅଷ୍ଟଗ୍ରହ କାହିଁକି ସ୍ଥାପିତ ହୋଇଥିଲେ ଏହା କେହି ଜାଣନ୍ତି ନାହିଁ ।

ମନ୍ଦିରର ବେଢ଼ାରେ ଥିବା ତିନୋଟି ଖାକର ଦେଉଳ ମଧ୍ୟରୁ ଉତ୍ତରରେ ଥିବା ଦେଉଳରେ ସପ୍ତମାତୃକା ମୂର୍ତ୍ତି ନିର୍ମିତ ହୋଇଛି । ଏହାର କାରୁକାର୍ଯ୍ୟ ଦେଖିବା ଲୋକଙ୍କୁ ବିମୁଗ୍ଧ କରିଥାଏ ।

ମଧୁକେଶ୍ୱର ମନ୍ଦିର ପ୍ରାଚୀନ ଉତ୍କଳୀୟ ମନ୍ଦିର ନିର୍ମାଣ କ୍ଷେତ୍ରରେ ଏକ ନିଆରା ଉଦାହରଣ ସୃଷ୍ଟି କରିଥିବ ନିଶ୍ଚୟ । ଅତୀତରେ ନିର୍ମିତ ଅନେକ ଉତ୍କଳୀୟ ମନ୍ଦିର ମଧ୍ୟରୁ ଏହା ସର୍ବୋଚ୍ଚ ଥିଲା । ଐତିହାସିକ ବିଦ୍ୟା ଦହେଜାଙ୍କ ମତରେ, ' ଏକା ଏକ ଅନନ୍ୟ ଏବଂ ଆକର୍ଷଣୀୟ ମନ୍ଦିର । ଏହାର ନିର୍ମାଣ କଳାରେ ଉତ୍କଳୀୟ ଏବଂ ଦାକ୍ଷିଣାତ୍ୟର ମନ୍ଦିର ନିର୍ମାଣ କଳାର ସମନ୍ୱୟ ଅଦ୍ଭୂତ ।'

ଅନ୍ୟ ମନ୍ଦିର

ମୁଖଲିଙ୍ଗମ୍ ଅଞ୍ଚଳରେ ଅବସ୍ଥିତ ଅନ୍ୟାନ୍ୟ ମନ୍ଦିର ମାନଙ୍କ ମଧ୍ୟରେ ସୋମେଶ୍ୱର ଶିବ ମନ୍ଦିର ମଧ୍ୟ ଉତ୍କଳୀୟ ମନ୍ଦିର ଶିଳ୍ପର ନମୁନା । ମନ୍ଦିରର ନିର୍ମାଣ ଶୈଳୀରୁ ଏହା ଦଶମ ଶତାବ୍ଦୀରେ ନିର୍ମାଣ ହୋଇଥିବା ଅନୁମାନ କରାଯାଏ ।

ମନ୍ଦିରରେ କେବଳ ଗୋଟିଏ ମୁଖ୍ୟ ଦେଉଳ ରହିଛି ଯାହା ପଶ୍ଚିମ ଆଡ଼କୁ ମୁହଁ କରିଛି । ଏହା ଏକ ଉଚ୍ଚ ପୀଠ ଉପରେ ନିର୍ମିତ ହୋଇଛି । ମନ୍ଦିର ସମ୍ମୁଖରେ ଏକ ନନ୍ଦି ଅବସ୍ଥାନ କରୁଛନ୍ତି । ଏହି ମନ୍ଦିରର ଉଚ୍ଚତା ୪୭ ଫୁଟ । ମନ୍ଦିରର ବାଡ଼ ତ୍ରିରଥ ଏବଂ ଶୀଖର ପଞ୍ଚରଥ ଆକାରରେ ନିର୍ମିତ ହୋଇଛି । ନିମ୍ନଭାଗ ଗୁରିଭାଗରେ ବିଭକ୍ତ ହୋଇଛି । କେନ୍ଦ୍ରୀୟ ଶିଖର







ବଜ୍ରମସ୍ତକ ଆକାରରେ ସୁନ୍ଦର ଭାବରେ ନିର୍ମାଣ କରାଯାଇଛି । ମନ୍ଦିରର ପାର୍ଶ୍ୱଦେବତା ମାନଙ୍କ ମଧ୍ୟରେ ଗଣେଶ, କାର୍ତ୍ତିକେୟ, ମହିଷାସୁରମର୍ଦ୍ଦିନୀ ପ୍ରମୁଖ । ଏହା ବ୍ୟତିରେକ ମନ୍ଦିର ଭିତରେ ଅନେକ ଦେବୀ ଦେବତାଙ୍କ ମୂର୍ତ୍ତି ନିର୍ମିତ ହୋଇଛି । ଏହି ମନ୍ଦିର ମଧୁକେଶ୍ୱର ମନ୍ଦିରଠାରୁ ଅଳ୍ପ ଦୂରତାରେ ଅବସ୍ଥିତ ।

ଅନ୍ୟ ଏକ ମନ୍ଦିର ହେଉଛି ଭିମେଶ୍ୱର ଶିବ ମନ୍ଦିର । ଏଠାରେ ଏକ ମୁଖ୍ୟ ମନ୍ଦିର ଏବଂ ଏକ ମୁଖଶାଳା ରହିଛି । ମଧୁକେଶ୍ୱର ମନ୍ଦିର ସହ ସମାନତା ରହିଛି ଅନେକ । ମନ୍ଦିରର ବାଡ଼ ତ୍ରିରଥ ଆକାରର ହୋଇଛି ଏବଂ ମନ୍ଦିରର ନିମ୍ନଭାଗ ତିନିଭାଗରେ ବିଭକ୍ତ ହୋଇଛି । ଶିଖରରେ କୋଡ଼ିଏଟି ପୀଢ଼ ରହିଛି । ଏହା ମଧ୍ୟରେ କେନ୍ଦ୍ରରେ ବଜ୍ରମସ୍ତକ ରହିଛି ।

ମନ୍ଦିରର ମୁଖଶାଳା ଚତୁର୍କୋଣୀୟ ହୋଇଛି । ମନ୍ଦିରର ପ୍ରବେଶଦ୍ୱାର ପୂର୍ବଦିଗକୁ ରହିଛି । ଏହା ବ୍ୟତୀତ ଦକ୍ଷିଣରେ ମଧ୍ୟ ଏକ ପ୍ରବେଶଦ୍ୱାର ରହିଛି । ଉତ୍ତର ଦିଗରେ ଏକ ସାନ ଝରକା ରହିଛି । ମୁଖଶାଳାରେ ଆଠଟି ସ୍ତମ୍ଭ ରହିଛି । ଏହି ସ୍ତମ୍ଭ ସବୁ ବିଭିନ୍ନ ମୂର୍ତ୍ତିମାନଙ୍କ ଦ୍ୱାରା ସୁସଜ୍ଜିତ ହୋଇଛି ।

ମୁଖ୍ୟ ଆଲେଖ୍ୟ - ଶ୍ରୀ ଲିଙ୍ଗରାଜ ପ୍ରସାଦ ଅମୂଲ୍ୟ ପଟ୍ଟନାୟକ
ଓଡ଼ିଆଭାଷାନ୍ତରଣ - ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ



# ଶାଳିହୁଣ୍ଡମ୍



ଲିଙ୍ଗରାଜ ପ୍ରସାଦ ପଟ୍ଟନାୟକ



ସୁଦୂର ଅତୀତରେ ଭାରତ ଉପମହାଦ୍ୱୀପରେ ପବିତ୍ର ଗଙ୍ଗା ଓ ଗୋଦାବରୀ ମଧ୍ୟରେ ଅବସ୍ଥିତ ଥିଲା ବିଶାଳ କଳିଙ୍ଗ ସାମ୍ରାଜ୍ୟ । ଏହାକୁ ଭୌଗଳିକ ଦୃଷ୍ଟିରୁ ଅନେକ ଭାଗରେ ବିଭକ୍ତ କରାଯାଇଥିଲା, ଏବଂ ଋଷିକୂଲ୍ୟାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଅଞ୍ଚଳକୁ ମଧ୍ୟ କଳିଙ୍ଗ ବୋଲି କୁହାଯାଉଥିଲା । ଅବଶ୍ୟ ଏହି ଅଞ୍ଚଳର ସୀମା ବାରମ୍ବାର ଯୁଦ୍ଧ ଏବଂ ଅନ୍ୟାନ୍ୟ କାରଣରୁ ଅସ୍ଥିର ରହିଥିଲା ।

କିଛି ଐତିହାସିକଙ୍କ ମତରେ କଳିଙ୍ଗ ସମ୍ରାଜ୍ୟରେ ବୌଦ୍ଧଧର୍ମର ଆଗମନ କଳିଙ୍ଗ ଯୁଦ୍ଧର ଅନେକ ପୂର୍ବରୁ ହୋଇଥିଲା । ଅତୀତରେ ମଗଧ ଏବଂ ଧୈର୍ଯ୍ୟକଳକକୁ ସଂଯୋଗ କରିଥିବା ପଥରେ ଏହା ବିସ୍ତାର ହୋଇଥିବା ଅନୁମାନ କରାଯାଉଛି । ସମ୍ଭବତଃ ଏହା ସ୍ଥଳପଥ କିମ୍ବା ଜଳପଥରେ ପ୍ରସାର ହୋଇଥିଲା । ଏହି ବିଶାଳ ଅଞ୍ଚଳରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ବେଳକୁ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର ହୋଇଥିବାର ପ୍ରମାଣ ଏଠାରେ ଥିବା ବିଭିନ୍ନ



ବୌଦ୍ଧକୀର୍ତ୍ତିରୁ ମିଳିଥାଏ । ଅନେକ ଐତିହାସିକଙ୍କ ମତରେ ଅତୀତର ଦୁର୍ଗ ସହର ଦନ୍ତପୁରମ୍, ବିଶାଳ କଳିଙ୍ଗ ସାମ୍ରାଜ୍ୟର ରାଜଧାନୀ ଥିଲା । କଳିଙ୍ଗପାଟଣା ଏହି ଅଞ୍ଚଳର ଏକ ବହୁପୁରାତନ ସାମୁଦ୍ରିକ ବନ୍ଦର । ଏହି ପଥରେ ଯାତ୍ରା କରୁଥିବା ସାଧବମାନେ ଏବଂ ଏହି ଅଞ୍ଚଳର ଶାସକମାନେ ହୁଏତ ବୌଦ୍ଧଧର୍ମର ପ୍ରସାରରେ ସାହାଯ୍ୟ କରିଥାଇ ପାରନ୍ତି ।

ଉତ୍ତର ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ୍ ଅଞ୍ଚଳର ଗାର୍ ବ୍ଲକରେ ଥିବା ଶାଳିହୁନ୍ଦମ୍ ଗ୍ରାମରେ ବଜ୍ରଯାନ ବୌଦ୍ଧମନ୍ଦିରର ଭଗ୍ନାବଶେଷ ଦେଖିବାକୁ ମିଳେ । ଏହି ଅଞ୍ଚଳଦେଇ ଅତୀତରେ କଳିଙ୍ଗର ଅଧିବାସୀମାନେ ସମୁଦ୍ରପଥରେ ଭ୍ରମଣ କରି ବ୍ୟବସାୟ କରୁଥିବାର ପ୍ରମାଣ ସିଦ୍ଧହୁଏ ।

ହୁଏନସାଂଙ୍କ କଳିଙ୍ଗପାଟଣା ପରିଦର୍ଶନ

ପ୍ରସିଦ୍ଧ ଚୀନୀୟ ପରିବ୍ରାଜକ ହୁଏନସାଂ ସପ୍ତମ ଶତାବ୍ଦୀରେ ଭାରତ ଭ୍ରମଣ କରିଥିବା ସମୟରେ କଳିଙ୍ଗପାଟନା ପରିଦର୍ଶନ କରିଥିଲେ ଏବଂ ତାଙ୍କର ଭ୍ରମଣ ଗ୍ରନ୍ଥରେ ସେ ଏହି ସ୍ଥାନରେ ୧୦ଟି ବୌଦ୍ଧ ବିହାର ଥିବା କଥା ଉଲ୍ଲେଖ କରିଛନ୍ତି । ସେହି ସମୟରେ ଏହି ଅଞ୍ଚଳରେ ୧୦୦ରୁ ଅଧିକ ମନ୍ଦିର ଥିଲା ଏବଂ ୫୦୦ରୁ ଅଧିକ ବୌଦ୍ଧଭିକ୍ଷୁ ଥିବା କଥା ଲେଖିଛନ୍ତି । ତାଙ୍କର ଉଲ୍ଲେଖନୀୟ ଉପସ୍ଥାପନରେ ସେ ଉଲ୍ଲେଖ କରିଛନ୍ତି ଯେ କଳିଙ୍ଗପାଟଣା ସାମୁଦ୍ରିକ ବନ୍ଦର ଠାରୁ ଦେଖିଲେ ଶହେ ଫୁଟ୍ ଉଚ୍ଚ ଏକ ସ୍ତୁପ ଦେଖାଯାଉଥିଲା । ଏହା ସମେତ ଅନେକ ମନ୍ଦିର ଦେଖାଯାଇଥିବା କଥା ସେ ଉଲ୍ଲେଖ କରିଛନ୍ତି । ହୁଏନସାଂ କହିଥିବା ଶହେ ଫୁଟ ଉଚ୍ଚ ସ୍ତୁପ ପ୍ରକୃତରେ ଏକ ପାହାଡ଼ର ଶୀର୍ଷରେ ଥିଲା । ବର୍ତ୍ତମାନ ସମୟରେ ସେହି ସବୁ ମନ୍ଦିର, ମୁର୍ତ୍ତୀ, ଷଡ଼ଭୂଜ, ଭବିଷ୍ୟ ବୁଦ୍ଧ, ଏବଂ ଅନ୍ୟାନ୍ୟ ବଜ୍ରଯାନ କଳାସ୍ଥାପତ୍ୟକୁ ପୁରାତତ୍ତ୍ୱ ବିଭାଗର







ସଂଗ୍ରହାଳୟରେ ରଖାଯାଇଛି ।

ଉତ୍ତର ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମର ଜଲ୍ଲାମୁଖ୍ୟାଳୟଠାରୁ ମାତ୍ର ୨୦ କଲୋମିଟର ଦୂରରେ ଅବସ୍ଥିତ ଶାଳହୁନ୍ଦମ ଗ୍ରାମ । ଏହା ୧୮.୨୦ ଡିଗ୍ରୀ ଉତ୍ତର ଅକ୍ଷାଂଶ ଏବଂ ୮୪.୩ ଡିଗ୍ରୀ ଉତ୍ତର ଦ୍ରାଘିମାରେ ଅବସ୍ଥିତ । ଏହ ଗ୍ରାମର ଦକ୍ଷିଣରେ ୧୨୦ ମିଟର ଉଚ୍ଚତା ବଶିଷ୍ଟ ଦୁଇଟି ପାହାଡ଼ ରହଛି । ପଶ୍ଚିମରେ ଥିବା ପାହାଡ଼ ଉପରେ ବଷ୍ଣୁଙ୍କର ମନ୍ଦିର ରହଛି ଏବଂ ପୂର୍ବରେ ରହଥିବା ପର୍ବତ ଉପରେ ବୌଦ୍ଧଧର୍ମର ପ୍ରମାଣ ସଦୃଶ ବଭିନ୍ନ କୃତର ଭଗ୍ନାବଶେଷ ରହଛି । ଏହ ଅଞ୍ଚଳରେ ବୌଦ୍ଧ ଧର୍ମରେ ବଶ୍ୱାସ ରଖୁଥିବା ମହାଯାନ ଗୋଷ୍ଠୀର ପ୍ରମୁଖ ବଜ୍ରଯାନ ଗୋଷ୍ଠୀର ଆଧିପତ୍ୟ ଥିବା ପ୍ରମାଣ ମିଳେ । କଳଙ୍ଗରେ ବୌଦ୍ଧଧର୍ମର ଆଦର କମି ଆସୁଥିବା ବେଳେ ଏହ ଅଞ୍ଚଳରେ ଏହାର ପ୍ରସାର ଆଶ୍ଚର୍ଯ୍ୟଜନକ ଲାଗେ ।

ଏହ ଅଞ୍ଚଳରେ ଖନନ କାର୍ଯ୍ୟ ୧୯୧୯ରେ ଏ ଏଚ୍ ଲଙ୍ଗହର୍ଷ୍ଟ ଙ୍କ ଦ୍ୱାରା କରାଯାଇଥିଲା ଏବଂ ପରେ ଟି ଏନ୍ ରାମଚନ୍ଦ୍ରନ(୧୯୪୩-୪୭) ଏବଂ ଆର୍ ସୁବ୍ରମଣ୍ୟମ୍ (୧୯୫୪) ଙ୍କ ଦ୍ୱାରା କରାଯାଇଥିଲା । ଏହ ଖନନ ଦ୍ୱାରା ଏଠାରେ ଗୋଟିଏ ବଶାଳ ମହାସ୍ତୁପ ଏବଂ ତନୋଟି ସାନ ସ୍ତୁପ, ଚୈତ୍ୟଗୃହ, ବହାର, ବାଟିକା, ସ୍ତୁପ ଏବଂ ମଣ୍ଡପ ଆଦ ଆବଷ୍କୃତ ହୋଇଥିଲା । ଏହା ସବୁ ବ୍ୟତୀରେକ ପ୍ରସ୍ତର ନର୍ମିତ ଅନେକ ଶିଳାମୂର୍ତ୍ତି, ରୋମାନ୍ ଦେବୀ ଦେବତାଙ୍କ ମୂର୍ତ୍ତି, ମାଟିର ପାତ୍ର, ଶିଳାଲେଖ, ମୁଦ୍ରା, ଶଙ୍ଖ ଆଦ ମିଳଥିଲା ।

ଏହ ସବୁ ପଦାର୍ଥ ଆବଷ୍କୃତ ହେବାପରେ ଗବେଷକମାନେ ବଶ୍ୱାସ କରଥିଲେ ଯେ ଖ୍ରୀଷ୍ଟାବ୍ଦ ତୃତୀୟରୁ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଏଠାରେ ବୌଦ୍ଧ ଧର୍ମର ଅଭୂତପୂର୍ବ ପ୍ରସାର ହୋଇଥିଲା ଏବଂ ସମ୍ଭବତଃ ଏହା କଳଙ୍ଗର ବୌଦ୍ଧଧର୍ମର କେନ୍ଦ୍ରବନ୍ଦୁ ଥିଲା ।

ଏଠାରେ ଆବଷ୍କୃତ ମହାସ୍ତୁପ ପର୍ବତର ଶୀର୍ଷରେ ଅବସ୍ଥିତ । ଏହା ବୃହଦାକାର ଇଟା ଦ୍ୱାରା ନର୍ମିତ । ପ୍ରତ୍ୟେକ ଇଟା ୪୬ x ୨୮ x ୮ ସେଣ୍ଟିମିଟର ଆକାରର ଥିଲା । ସ୍ତୁପର ବ୍ୟାସ ୧୪ ମିଟର ଥିଲା । ସ୍ତୁପର ତଳ ୯୦ ସେଣ୍ଟିମିଟର ଉଚ୍ଚତା ବଶିଷ୍ଟ । ସ୍ତୁପର ପ୍ରାଚୀର ପଥର ଓ ମାଟିଦ୍ୱାରା ନର୍ମିତ ହୋଇଥିବା ବେଳେ, କାନ୍ଥରେ ପ୍ଲାଷ୍ଟର ଲାଗିଥିବାର ପ୍ରମାଣ ମିଳଛି ।







ମହାସ୍ତୁପର ପଶ୍ଚିମରେ ଦୁଇଟି ସାନ ସାନ ସ୍ତୁପ ଦେଖିବାକୁ ମିଳେ । ପ୍ରତ୍ୟେକ ସାନ ସ୍ତୁପର ବ୍ୟାସ ସାଢ଼େ ସାତ ମିଟର । ମହାସ୍ତୁପର ଉତ୍ତରରେ ଆଉ ଗୋଟିଏ ସାନ ସ୍ତୁପ ଦେଖିବାକୁ ମିଳେ । ଏହାର ବ୍ୟାସ ୮.୮୫ ମିଟର ଅଟେ । ଏହା ଚକ୍ରାକାରରେ ନିର୍ମିତ ଏକ ସ୍ତୁପ ଯାହା ବର୍ତ୍ତମାନ ମାଟିରେ ସମ୍ପୂର୍ଣ୍ଣଭାବରେ ପୋତି ହୋଇଛି ।

ଶାଳିହୁଣ୍ଡମ୍ ଗ୍ରାମ ମୁଖ୍ୟ ରାସ୍ତା ଗ୍ରାମର ପୂର୍ବରୁ ପଶ୍ଚିମ ଯାଏଁ ଲମ୍ବିଛି । ଏବଂ ଏହି ଗ୍ରାମରୁ ବଂଶଧାରା ନଦୀ ପର୍ଯ୍ୟନ୍ତ ଯିବାପାଇଁ ଏକ ଅନୁନ୍ନତ ସଡ଼କ ରହିଛି । ସମ୍ଭବତଃ ଏହି ପଥଦେଇ ବୌଦ୍ଧଭିକ୍ଷୁମାନେ ନଦୀକୁ ଯାଉଥିବେ ବୋଲି ଧାରଣା କରାଯାଉଛି । ଏହି ରାସ୍ତାର ବାମ ପାର୍ଶ୍ୱରେ ଅନେକ ବିଶାଳ ବୌଦ୍ଧ ଏବଂ ମାରିଚଙ୍କ ପ୍ରତିମାର ଭଗ୍ନାବଶେଷ ଦେଖିବାକୁ ମିଳେ । ମାରିଚଙ୍କ ପ୍ରତିମୂର୍ତ୍ତି ଓଡ଼ିଶାର ବାଲେଶ୍ୱର ଜିଲ୍ଲା ଖିଚିଂ ଠାରେ ମଧ୍ୟ ଦେଖିବାକୁ ମିଳେ ।

ରୋମାନ ମାନେ ବ୍ୟବହାର କରିଥିବା ମୁଦ୍ରା ଶାଳିହୁଣ୍ଡମରେ ୧୮୮୯ରେ ମିଳିଥିବାର ଲିଖିତ ପ୍ରମାଣ ମିଳେ । ଶାଳିହୁଣ୍ଡମରେ ବୌଦ୍ଧମୂର୍ତ୍ତି ପାଇଁ ଖନନ କରାଯିବାର ଅନେକ ପୂର୍ବରୁ ରୋମାନ୍ ମୁଦ୍ରା ଏଠାରେ ମିଳିଥିଲା । ଏହି ଅଞ୍ଚଳରେ ଏବଂ କଳିଙ୍ଗପାଟଣା ସମେତ ଥୋଟ୍ଲାକୁଣ୍ଡା, ବାବିକୋଣ୍ଡା, ଲିଙ୍ଗରାଜପାଲେମ୍ ଅଞ୍ଚଳରେ ମଧ୍ୟ ରୋମାନ୍ ମୁଦ୍ରା ମିଳିଥିବାର ପ୍ରମାଣ ରହିଛି । ଏଥିରୁ ପ୍ରମାଣିତ ହୁଏ ଯେ ଅତୀତର କଳିଙ୍ଗପାଟଣା ଏକ ବ୍ୟସ୍ତ ବନ୍ଦର ଥିଲା । ଏବଂ ଏହି ଅଞ୍ଚଳ ଏକ ବୃହତ ବ୍ୟବସାୟିକ ତଥା ଧାର୍ମିକସ୍ଥଳୀ ଥିଲା ଯେଉଁଠି ବୌଦ୍ଧଧର୍ମର ପ୍ରାଧାନ୍ୟ ଦେଖିବାକୁ ମିଳିଥିଲା । ତୃତୀୟ ଶତାବ୍ଦୀରୁ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ବୌଦ୍ଧ ଧର୍ମରେ ବିଶ୍ୱାସ ରଖୁଥିବା ଥେରବାଦ, ମହାଯାନ ଏବଂ ବଜ୍ରଯାନ ଆଦି ବିଭାଗର ଉନ୍ନତି ଏହି ଅଞ୍ଚଳରେ ଦେଖିବାକୁ ମିଳିଥାଏ ।

ମୂଳ ଆଲେଖ୍ୟ : ଶ୍ରୀ ଲିଙ୍ଗରାଜ ପ୍ରସାଦ ଅମୂଲ୍ୟ ପଟ୍ଟନାୟକ

ଭାଷାନ୍ତରଣ : ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ



# ଶାରଦୀୟ ଚନ୍ତନ



ବନୟ ମହାପାତ୍ର

ମଣିଷ ଜୀବନ ଦୁଇ ଦନ । ଏହ ଦୁଇ ଦନଆ ଜୀବନରେ ମଣିଷ ନଜେ ତଥା ନଜ ପରବାର ସହ ହସ ଖୁସିରେ କାଳାତପାତ କରବା ପାଇଁ ଧନ ଉପାର୍ଜନ ହିଁ ଜୀବନର ପ୍ରଧାନ ଲକ୍ଷ୍ୟ ମଣି ଜୀବନର ଅଧିକାଂଶ ସମୟ ଧନ ଉପାର୍ଜନରେ ବ୍ୟୟ କରଦଏ । ଧନ ଉପାର୍ଜନ କରବା ଭଲ କଥା କନ୍ତୁ – ଏଭଳ ଜୀବନଯାପନ କର ଲାଭ କଣ, ଯଦ ସେଥିରେ ଆମେ ଆମ ଜୀବନକୁ ଉପଭୋଗ କରପାରବା ନାହିଁ । ଆଜ ଅବସ୍ଥା ଏଭଳ ହୋଇଛ କାହା ପାଖରେ ସମୟ ନାହିଁ । ସତେ ଯେମିତ ଜୀବନ ଆଜ ଦୌଡ଼ ପ୍ରତଯୋଗୀତା ହୋଇଯାଇଛ; ସମସ୍ତେ ଦୌଡ଼ିବାରେ ବ୍ୟସ୍ତ । ସବୁର ମନରେ ଭୟ ଯଦ ଏ ଜୀବନ ଦୌଡ଼ରେ କ୍ଷୀପ୍ରଗତରେ ଦଉଡ଼ିବେ ନାହିଁ ତା'ହେଲେ ସେମାନେ ଜୀବନ ଯୁଦ୍ଧରେ ବହୁତ ପଛରେ ପଡ଼ିଯିବେ । କଏ ଚାକରୀରେ ବ୍ୟସ୍ତ ତ ଆଉ କଏ ବ୍ୟବସାୟ ବାଣିଜ୍ୟରେ ପୁଣି ଆଉ କେହ ପାଠପଢ଼ା ଓ ଅଧ୍ୟୟନରେ । କାମରୁ କାହାରକୁ ଫୁରସତ ନାହିଁ । ଯାହା ଫଳରେ ମଣିଷ ଆଜ ନା ଠିକ ସେ ଖାଇ ପାରୁଛ ନା ଶାନ୍ତରେ ଶୋଇ ପାରୁଛ ।

ଦନ ଥିଲା ପରବାରରେ ସମସ୍ତେ ଏକାଠି ବସି ଖାଉଥିଲେ ଏକାଠି ଉଠୁଥିଲେ । ଏବେ ଖାଇବା ତ ଦୂରର କଥା ଏକାଠି ବସି ଦୁଇପଦ ଗପସପ ହେବା ପାଇଁ କାହର ପାଖରେ ସମୟ ନାହିଁ । ଏଭଳ ବ୍ୟସ୍ତତା ସମ୍ପର୍କରେ ଦୂରତା ନେଇ ଆସିଛ । ଏହା ଦ୍ୱାରା ପାରବାରକ ମୂଲ୍ୟବୋଧ ରହୁନାହିଁ । କେବଳ ସେତକ ନୁହେଁ ସମୟ କ୍ରମେ ଆଜ ପରବାରର ସଜ୍ଞା ବଦଳ ଯାଇଛ । ଦନ ଥିଲା ପରବାରରେ ବାପା, ମାଆ, ଭଇ – ଭଉଣୀ, ଜେଜେ ବାପା ଜେଜେ ମାଆ, ଦଦା - ଖୁଡ଼ୀ, ବଡ଼ବାପା – ବଡ଼ମାଆ, ସଭଏଁ ମିଳମିଶି ଗୋଟିଏ କୁଟୁମ୍ବ ଭାବେ ଚଳୁଥିଲେ । ଧୀରେ ଧୀରେ ସେଇ ଯୌଥ ପରବାରର ପରଭାଷା ପରବର୍ତ୍ତନ ହୋଇଗଲା । ଯୌଥ ପରବାରର ସଙ୍କୁଚତ ହୋଇଗଲା । ସ୍ୱାମୀ ସ୍ତ୍ରୀ ଏବଂ ତାଙ୍କ ସନ୍ତାନକୁ ନେଇ ଗଠନ ହେଲା କ୍ଷୁଦ୍ର ପରବାର । କନ୍ତୁ ଆଜ ସେଇ





କ୍ଷୁଦ୍ର ପରିବାର ଅତି କ୍ଷୁଦ୍ର ହେବାରେ ଲାଗିଛି । କର୍ମ ସଂସ୍ଥାନ ଅଭାବ ହେତୁ ସନ୍ତାନମାନେ ଭିଟାମାଟି ଛାଡ଼ି ପ୍ରବାସରେ ରହୁଛନ୍ତି; ଫଳସ୍ୱରୂପ ବୃଦ୍ଧ ସ୍ୱାମୀସ୍ତ୍ରୀ ନିଃସଙ୍ଗ ଜୀବନ ଯାପନ କରିବା ପାଇଁ ବାଧ୍ୟ ହେଉଛନ୍ତି । ପ୍ରବାସରେ ରହୁଥିବା ଯୁବକ ଯୁବତୀ କର୍ମକ୍ଷେତ୍ରରେ ଏଭଳି ବ୍ୟସ୍ତ ରହୁଛନ୍ତି ଯେ ପିତା ମାତାଙ୍କ ଭଲ ମନ୍ଦ ପଚାରିବା ପାଇଁ ସମୟ ପାଉ ନାହାନ୍ତି । ମଣିଷ ଆଜି ସତେ ଯେମିତି ମେସିନ ପାଲଟି ଯାଇଛି; ମଣିଷ ମଧ୍ୟରେ ଆଉ ମାନବୀୟ ମୂଲ୍ୟବୋଧର ଘୋର ଅଭାବ ଦେଖାଗଲାଣି । ସକାଳୁ ସଞ୍ଜପର୍ଯ୍ୟନ୍ତ ସମସ୍ତେ ଗଧଭଳି ଖଟୁଛନ୍ତି । ଆଜି ଆମେ ଏତେ ବ୍ୟସ୍ତ ଯେ ନିଜ ଶରୀରକୁ ସୁସ୍ଥ ରଖିବା ପାଇଁ ବ୍ୟାୟାମ କରିବା ପାଇଁ ସମୟ ନାହିଁ କି ମନ ଖୁସି କରିବା ପାଇଁ ବହିଟିଏ ପଢ଼ିପାରୁନୁ । ଏଭଳି ଅବସ୍ଥା ଯୋଗୁଁ ମଣିଷ ଜୀବନ ସର୍ଟକର୍ଟ ଜୀବନ ହୋଇ ଯାଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଦିନ ଥିଲା ଘରେ ଜେଜେବାପା ଜେଜେମା ମାନେ ଘଣ୍ଟା ଘଣ୍ଟା ଧରି ଠାକୁର ଘରେ ପୂଜା କରୁଥିଲା ଫଳରେ ଘରେ ସଭିଙ୍କ ମନରେ ଆଧାତ୍ମିକତା ଭରି ଯାଉଥିଲା । ମନରେ ଆଧାତ୍ମିକ ଚେତନା ଭରି ଯାଉଥିଲା । କିନ୍ତୁ ଆଜିକାଲି କାହାରି ମନରେ ଆଧାତ୍ମିକ ଭାବ ନାହିଁ । କାହାରି ପାଖରେ ଠାକୁରଙ୍କୁ ମୁଣ୍ଡିଆ ମାରିବା ପାଇଁ ସମୟ ନାହିଁ । କେବଳ ସେତିକି ନୁହେଁ; ଫିଲ୍ମ ଦେଖିବା ହେଉ ଅବା ଖାଇବା ସବୁ କମ ସମୟ ମଧ୍ୟରେ ହୋଇଗଲେ ଭଲ । ଆଉ ସାଙ୍ଗସାଥିଙ୍କ ସହ ଦେଖା କରି ଖୁସି ଗପ କରିବାକୁ କାହା ପାଖରେ ସମୟ ନାହିଁ । ହ୍ୱାଟସ୍ଆପ କିମ୍ବା ଫେସ୍ବୁକ୍ରେ ହେଲୋ ହାଏ କହି ଦେଲେ କାମ ସାରିଲା । ଏଭଳି ତୀବ୍ରଜୀବନ ବା ଫାଷ୍ଟ ଲାଇଫ୍ ଯୋଗୁଁ ମଣିଷ ଆଜି ଅକାଳରେ ଅନେକ ରୋଗର ଶୀକାର ହେଉଛି ।  ଭଲଭାବେ ସେ ଜୀବନକୁ ଉପଭୋଗ କରି ପାରୁନି । ସବୁ ଥାଇ ମଧ୍ୟ ସେ ଖୁସି ହୋଇପାରୁନି । ପରିବାର ଥାଇ ମଧ୍ୟ ସେ ପରିବାରଠାରୁ ଦୂରେଇ ଯାଉଛି । ଜଞ୍ଜାଳ ମାୟା ଜୀବନରେ ମାନସିକ ଦୁଶ୍ଚିନ୍ତା ରହିବା ସ୍ୱାଭାବିକ କିନ୍ତୁ ବ୍ୟସ୍ତତା ମଧ୍ୟରେ ଆମକୁ ନିଜ ପାଇଁ ସମୟ ବାହାର କରିବାକୁ ପଡ଼ିବ । ତାହେଲେ ଯାଇ ଆମେ ଖୁସିରେ ରହିପାରିବା ।

ଶାରଦୀୟ ଦଶହରା ଉପଲକ୍ଷେ ଆହ୍ୱାନର ସମସ୍ତ ପାଠକପାଠିକାଙ୍କୁ ଏତିକି ଅନୁରୋଧ କରିବାକୁ ଚାହେଁ ଏହି ବ୍ୟସ୍ତ ବହୁଳ ଜୀବନରୁ କିଛି ସମୟ ବାହାର କରି ପରିବାର ସହ ଆନନ୍ଦ ଉଲ୍ଲାସର ସହ ଦୁର୍ଗାପୂଜା ପାଳନ କରନ୍ତୁ ।



# ଦଦ ତୁମକୁ ପ୍ରେମ ହୋଇଗଲା



ଅନ୍ତର୍ଯ୍ୟାମୀ ସରଘରଆ

ସବୁଦନ ମୁଁ ଅଫିସ୍ ଆସିବା ବାଟରେ ତାକୁ ଭେଟେ । ଟୋକାଟା ମନ୍ଦିର ଛକରେ ମୋତେ ଭେଲକା ମାର ଅନେଇ ବସିଥାଏ । ବୟସ ବେଶୀ ହେବନ, କୋଡ଼ିଏ କ ବାଇଶି । ମୁଁ ବୁଝିପାରେନ, ଟୋକାଟା ମୋତେ କାହିଁକ ଏମିତ ଅନେଇଛ ? ତା ଆଖିରେ ମୋ ଆଖି ମିଶିଲେ ସେ ଫିକ୍ କନା ହସିଦଏ । ପ୍ରଥମେ ପ୍ରଥମେ ତା ହସଟା ମୋତେ ବରକ୍ତିକର ଲାଗୁଥିଲା, ହେଲେ କାହିଁକ କେଜାଣି ଏବେ ମୋତେ ତା ହସତା ଭଲ ଲାଗୁଛ ।

ସେଦନ ଘରୁ ବାହାରବା ବେଳେ ଝିଅ କାଚ ଗ୍ଲାସଟା ହାତରୁ ଖସେଇ ଭାଙ୍ଗିଦେଲା । ବରକ୍ତ ହୋଇ ତାକୁ କହଲ ବୟସ ଆସି ସତର ହେଲା ହେଲେ ଢଙ୍ଗଢାଙ୍ଗ କଛ ଶିଖିଲୁନ ? ମନଟା କାହିଁକ କେଜାଣି ବରକ୍ତିକର ଲାଗୁଥାଏ, ଅନ୍ୟମନସ୍କ ହୋଇ ରାସ୍ତା ଚାଲୁଥାଏ । ମନ୍ଦିର ଛକରେ ମନକୁ ମନ ମୋ ଗତଟା ମନ୍ଥର ହୋଇଗଲା, ଖୋଜିଲା ଆଖିରେ ମୁଁ ଏଣେ ତେଣେ ଅନେଇଲ । ଆରେ ହଁ, ମୋ ଅଜାଣତରେ ମୁଁ ଏବେ ସବୁ ଦନ ସେ ଟୋକାକୁ ଖୋଜୁଛ । ସେଦନ କନ୍ତୁ ଟୋକାଟା ସେଇଠି ନଥିଲା ।

ସେ ସପ୍ତାହଟା ସାରା ମୁଁ ତାକୁ ଦେଖିନ । କାହିଁକ କେଜାଣି ମୋ ମନଟା ଭଲ ରହଲାନ । ସବୁକଥାରେ ମୋତେ ରାଗ ଲାଗୁଥିଲା । ସମସ୍ତଙ୍କ ଉପରେ ଚଡ଼ି ଚଡ଼ି ହେବାକୁ ଭଲ ଲାଗୁଥିଲା । ଝିଅ କହଲା, ମାମା ତୋର କଣ ହୋଇଛ, ଅଫିସ ରାଗ ଘରେ କାହିଁକ ଛାଡୁଛୁ ? ମୁଁ





ଭାବିଲି ସତରେ ଅଫିସରେ କଣ ଘଟିଛି କି ? ନା ତ ସେମିତି କିଛି ଘଟିନି । ତା'ହେଲେ ମନଟା କାହିଁକି ଥୟ ଧରୁନି ଖାଲି ଗୁଡ଼େଇ ତୁଡ଼େଇ ହେଉଛି ?

ସୋମବାର ଦିନ ଅଫିସ ରାସ୍ତାରେ ମନ୍ଦିର ପାଖରେ ହଠାତ୍ ଟୋକାଟାକୁ ଦେଖିଲି, ହେଲେ ମୋତେ ଦେଖି ସେ ହସିଲାନି । ମୁଁ ଆଉ ସମ୍ଭାଳି ପାରିଲିନି, ତାକୁ ପାଖକୁ ଡାକିଲି । ସେ ଡରି ଡରି ପାଖକୁ ଆସିଲା । ମୁଁ ତାକୁ ପଚାରିଲି, ହଇରେ ମୋତେ ଦେଖି କାହିଁକି ହସିଲୁ ? ସେ କହିଲା ମୁଁ ତ ହସିନି । ମୋ ରାଗ ବଢ଼ିଲା । ମୁଁ ମୁହଁ ମୋଡ଼ି ଚାଲି ଆସିଲି । ଅଫିସରେ ଯାଇ ରଜତ ବାବୁଙ୍କୁ ସବୁ କଥା କହିଲି, ସେ କହିଲେ, 'ଦିଦି ତୁମକୁ ପ୍ରେମ ହୋଇଗଲାକି ?"



# ଏମିତି ଏ ପ୍ରେମ



ଅନ୍ତର୍ଯ୍ୟାମୀ ସରଘରିଆ

ଅଗନା ଅଗନ ବନସ୍ତ ଭିତରେ କାଚକେନ୍ଦୁ ପାଣି ଭରା ପୋଖରୀଟିଏ । ରାଜା ଝିଅ ତା ସଖୀମାନଙ୍କ ସହ ମନମୌଜରେ ଏଠାରେ ଜଳକ୍ରୀଡ଼ାରେ ବ୍ୟସ୍ତଥାଏ । କୁଆଡ଼କୁ ନଘାନାହିଁ । ଅନ୍ୟ ସଖୀମାନେ ପୋଖରୀ ହୁଡ଼ାରେ ପ୍ରହରୀ ଦେଉଥାନ୍ତି । ଘୋଡ଼ା ଟାପୁର ଶବ୍ଦ ଶୁଭିଲା । ହଠାତ୍ କୁଆଡୁ ତୃଷାର୍ତ୍ତ ରାଜକୁମାରଟିଏ ପୋଖରୀ କୂଳରେ ପହଞ୍ଚିଲା । ରାଜଝିଅ ସରମରେ ଝାଉଁଳିଯାଇ ପାଣିଭିତରକୁ ଚାଲିଗଲା । ରାଜକୁମାର ପାଣି ପିଇଦେଇ ନିଜ ବାଟରେ ଚାଲିଗଲା ।

ରାଜକୁମାରୀ ଜଳକ୍ରୀଡ଼ା ସମୟ ନ ହେଉଣୁ ସଖୀମାନଙ୍କୁ ଜଳକ୍ରୀଡ଼ା କରିଯିବାକୁ ଡାକିଲା, ସଖୀଏ କହିଲେ, ଏବେ ତ ସମୟ ହୋଇନି ? ରାଜକୁମାରୀ କହିଲା, ମୋ ଇଚ୍ଛାରେ ମୁଁ ଜଳକ୍ରୀଡ଼ା କରିବାକୁ ଯିବି ନା ତୁମ ସମୟକୁ ଅପେକ୍ଷା କରିବି ? ସେଦିନ କିନ୍ତୁ ରାଜକୁମାରୀର ମନ ଜଳକ୍ରୀଡ଼ାରେ ନଥିବା ପରି ଲାଗୁଥିଲା । ଅନ୍ୟମନସ୍କ ଥିଲା ସେ । ଅନେକ ସମୟ ଜଳକ୍ରୀଡ଼ା ପରେ ସେ ପୋଖରୀ ତୁଠରେ ବସିଥିବା ବେଳେ ଘୋଡ଼ା ଟାପୁର ଶବ୍ଦଶୁଣି ପୋଖରୀ ଭିତରକୁ ଡେଇଁ ପଡ଼ିଲା । ପୂର୍ବଦିନପରି ରାଜକୁମାର ପୋଖରୀର ଜଳପାନ କରି ଫେରିଗଲା ।

ଏହାପରେ ସବୁ ଦିନ ରାଜକୁମାର ରାଜକୁମାରୀର ଜଳକ୍ରୀଡ଼ା ସମୟରେ ପହଞ୍ଚେ ଆଉ ପାଣି ପିଇଦେଇ ଚାଲିଯାଏ । ସଖୀଏ କହିଲେ, ଛତରଟାଏ । ଏ ଖବର ମହାରାଜ ଜାଣିବା ଉଚିତ ।





ରାଜକୁମାରୀ ଚଢ଼ିଗଲା । ସବୁକଥା କଣ ମହାରାଜା ଜାଣିବା ଉଚିତ ? ନା କେହି ଏ କଥା ମହାରାଜଙ୍କୁ ଜଣାଇବ ନାହିଁ ।

ସମୟ ଗଡ଼ି ଚାଲିଲା । ରାଜକୁମାରୀ ଖୁବ୍ କମ୍ ଅଙ୍ଗବାସରେ ଜଳକ୍ରୀଡ଼ା କରିବାକୁ ଲାଗିଲେ । ଆଉ ରାଜକୁମାରର ତୃଷା ବି ବଢ଼ି ବଢ଼ି ଚାଲିଲା । ଦିନେ ରାଜକୁମାରର ଘୋଡ଼ା ଆଉ ରାଜକୁମାରୀର ସବାରୀ ସାମ୍ନା ସାମ୍ନି ହେଲେ । ରାଜକୁମାରୀ ସବାରୀରୁ ବାହାରି, ରାଜକୁମାରଙ୍କୁ ପ୍ରଶ୍ନ କଲା, ତୁମେ ଜାଣିଛ ଏଇଟା ନିଭୃତ ଜଳକ୍ରୀଡ଼ା ତୁଠ, ଅଥଚ ସବୁଦିନ ତୁମେ ଏଇଠାକୁ ପାଣି ପିଇବାକୁ ଆସୁଛ ? ମହାରାଜ ଜାଣିଲେ ତୁମେ ବନ୍ଦୀ ହେବ । ରାଜକୁମାର କହିଲେ, ତୃଷାର୍ତ୍ତ କଣ ବୁଝେ ତୁଠ ଅତୁଠ ? ଶୋଷ ଯେଉଁଠି ତୁଠ ସେଇଠି । ତା ହେଲେ ମୋ ଶୋଷ କାହିଁକି ମରୁନି ? ରାଜ କୁମାରୀ ପଚାରିଲେ । ରାଜକୁମାର ମୁହଁ ତଳକୁ କରି ଚାଲିଗଲେ ।

ତା'ପରଦିନ ଠାରୁ ରାଜକୁମାରଙ୍କୁ ଆଉ ପୋଖରୀ ତୁଠରେ ଦେଖିବାକୁ ମିଳିଲାନି । ରାଜକୁମାରୀ ଅଥୟ ହେଲେ । ସପ୍ତାହକ ପରେ ଘୋଡ଼ା ଟାପୁର ଶବ୍ଦ ଶୁଣାଗଲା । ରାଜକୁମାର ପାଣି ପିଇବାକୁ ପୋଖରୀ ତୁଠକୁ ଆସିଲା । ରାଜକୁମାରୀ ପ୍ରଶ୍ନକଲେ, ଏତେ ଦିନ ହେଲା କଣ ଶୋଷ ହେଉନଥିଲା ? ରାଜକୁମାର କହିଲା, ମୁଁ ରାଜକୁମାର, ମୋ ଇଚ୍ଛାରେ ମୋତେ ଶୋଷ ହେବ । ରାଜକୁମାରୀ ଚିତ୍କାର କରିଉଠିଲା, ସୈନ୍ୟସାମନ୍ତ କୁଆଡୁ ମାଡ଼ି ଆସିଲେ, ରାଜକୁମାର ବନ୍ଦୀ ହେଲେ ।

ରାଜକୁମାରୀ ଆଉ କେବେ ଜଳକ୍ରୀଡ଼ା କରିବାକୁ ଯିବାର କେହି ଦେଖିନାହିଁ, ଅବଶ୍ୟ ସବୁଦିନ ଅପରାହ୍ନରେ ସେ କାରାଗାର ଆଡ଼େ ବୁଲିଯାଆନ୍ତି ବୋଲି ସମସ୍ତେ ଶୁଣୁଥିଲେ ।





# ସମ୍ପାଦକଙ୍କୁ ପତ୍ର



ବରୁଣ କୁମାର ଦାସ

ମହାଶୟ ନମସ୍ତେ । 'ଆହ୍ୱାନ' ପରିବାରର ସମସ୍ତ ସଦସ୍ୟ/ସଦସ୍ୟାମାନଙ୍କୁ ଯଥାଯୋଗ୍ୟ ସମ୍ମାନ ଜଣାଉଛି ।

ଅଗଷ୍ଟ ସଂସ୍କରଣ ପାଠ କରିବାପରେ ନିଜକୁ ଯେମିତି ମନେ ହୋଇଛି ସେମିତି କହୁଛି । ସମ୍ପାଦକୀୟ ଦର୍ପଣ ଯାହାଠି ପ୍ରତିଫଳିତ ସାଂପ୍ରତିକ ଇସ୍ତାହାର । ସଂପାଦକଙ୍କ 'ରକ୍ଷାବନ୍ଧନ : ଏକ ପର୍ବ ନା ଏକ ପରମ୍ପରା', ପୂର୍ଣ୍ଣଚନ୍ଦ୍ର ପଣ୍ଡାଙ୍କ 'ବିପଦରେ ଗଞ୍ଜାମର ଲୁଣମରା ବ୍ୟବସାୟ', ଅଧ୍ୟାପକ ସୁଶାନ୍ତ କୁମାର ପୁରୋହିତଙ୍କ 'ଓଡ଼ିଆ ଭାଷାର ଉନ୍ନତି ଓ ଆମେ' ଏବଂ 'ମହାନଦୀ - କିଛି ତଥ୍ୟ, କିଛି ବିତର୍କ' ଏବଂ ଗବେଷିକା ରଞ୍ଜିତା ପାତ୍ରଙ୍କ 'ଲୋକ ସାହିତ୍ୟର ବିକାଶଧାରା' ଆଦି ଉପାଦେୟ ପ୍ରବନ୍ଧମାନ ହୋଇଛି । ଅନୁଭୂତ ପ୍ରବନ୍ଧ 'ଶ୍ରୀକାକୁଲମ୍‌ର କୁର୍ମନାଥସ୍ୱାମୀ ମନ୍ଦିର' ଏକ ତଥ୍ୟ ସମ୍ବଳିତ ଲେଖା । ସମ୍ପାଦକ କଥାକାର ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକଙ୍କ କାଳ୍ପନିକ କାହାଣୀ 'ମୋ କୁନିର ଝିଅ ହେବ'ରେ ଲୁଚି ରହିଛି ଆଗାମୀ ଶତକର ବାସ୍ତବ ପରିସ୍ଥିତିର ଛବି ।

କବିତା କ୍ରମରେ 'ଭାରତମାତା', 'ଆଜିର ଉତ୍କଳ', 'ସୁଯୋଗ୍ୟ ସନ୍ତାନ', 'ଭାରତ ସ୍ୱତନ୍ତ୍ର ଦିବସ', ଭିତରେ ନାହିଁ, 'ଶିବ ଓ ଶ୍ରାବଣ', କିମ୍ବା 'ନିଜ ସହ ରୋମାନସ୍' କିମ୍ବା 'ଧାରା ଶ୍ରାବଣ' ବରଂ ଅଛି ଏଇ ଦେଶ 'ଏଇତ ଦୁନିଆ'ର 'ନିଷ୍ଠୁର', 'ବାସ୍ତବତା' । 'ମୋ ପ୍ରିୟା', 'ବରଷା ପରଶେ', 'ଖୋଜି ପାଉନି ବନ୍ଧୁ', ବରଂ ଖୋଜିପାଉଛି ଜଣେ 'ଭସ୍ମାସୁର' ଯେଣୁ ଆଉ 'ନିଜ ହାତମୁଠାରେ ନାହିଁ ଜୀବନ' । କିଏ ବା ଖୋଜିବ 'ଡାକ୍ତର ଘନଶ୍ୟାମଙ୍କ ଇଜ୍ଜତ' କିମ୍ବା 'କାହିଁକି ରାଗିଲା ସମୁଦ୍ର ?' ବୋଲି ପ୍ରଶ୍ନକରି ଭୋଗିବ 'କର୍ମଫଳ' ।

'ଆହ୍ୱାନ' କ୍ରମଶଃ ପରିବ୍ୟାପ୍ତ ହେଉ ଦେଶରୁ ଦେଶାନ୍ତର ପହଞ୍ଚିଯାଉ, ପୃଥିବୀର ସବୁ ପ୍ରାନ୍ତର ଓଡ଼ିଆ ସୃଜନର ସାରଥୀମାନଙ୍କ ପାଖରେ । ବିଳମ୍ବିତ ରାତ୍ରୀ ଇଙ୍ଗିତ ଦେଉଛି ଚିଠି ଇତି କରିବା ଲାଗି । ଧନ୍ୟବାଦ ସହ ରହିଲି ।

ଇତି

ବରୁଣ କୁମାର ଦାସ



# ଆମର ଦାବୀ ପୂରଣ ହେଉ



ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଖରାବେଳଟାରେ ସବୁ କର୍ମଚାରୀ ମଧ୍ୟାହ୍ନ ଭୋଜନ ପକେଇବା ପାଇଁ କ୍ୟାଣ୍ଟିନରେ ଭିଡ଼ ଜମେଇଛନ୍ତି । କୁନା ଭିତରକୁ ପଶିଯାଇ, ଟେବୁଲ ଉପରେ ବସି ଘରୁ ଆଣିଥିବା ଟିଫିନ୍ ଖୋଲିଲା । ବୋଉ କଡ଼ା ତାଗିଦ କରିଛି, ବାହାର ଜିନିଷ ଜମା ଖାଇବୁନି । ପେଟ ଖରାପ ହେଇଯିବ ବୋଲି ମନା କରିନି, ବାହାରେ ଖାଇଲେ ଅଯଥା ଖର୍ଚ୍ଚାନ୍ତ ହେବୁ ଆଉ ଘର ପାଇଁ ଆଣିଥିବା ଋଣ କେମିତି ଶୁଝିବ ? ତେଣୁ କୁନା ବାହାରୁ ଚା କପଟିଏ ବି କିଣି ପିଏନି । ଟିଫିନ୍ ଡବାଭିତରୁ ଆଜି ଭଲ ବାସନା ଆସୁଥିଲା । ଦେଖିଲା ବେଳକୁ ଭିତରେ ପରଟା ସାଙ୍ଗକୁ ଘିଅ ଦିଆ ଆଳୁ ଭଜା ଥିଲା । କୁନାକୁ ଆଳୁ ପସନ୍ଦ ନାହିଁ, ହେଲେ ସ୍ତ୍ରୀକୁ ମୁହଁ ଖୋଲି କିଛି କହିଲେ ବିପଦ । ମନେ ମନେ ଏମିତି ଚିନ୍ତା କରୁଥିବା ବେଳେ ପାଖ ଟେବୁଲରେ ଚାଲିଥିବା କଥାବାର୍ତ୍ତା ତା କାନରେ ପଡ଼ିଲା । ଅଫିସର ବରିଷ୍ଠ କିରାଣୀ ମହାନ୍ତି ବାବୁ କହୁଥିଲେ, 'ଛି ଛି ଛି, ଏମିତିକା ଲୋକ ମୁଁ ମୋ ଜୀବନରେ ଦେଖିନି । ହଇ ହେ, ଝିଅ ତ ଦେଲି । ଯୌତୁକ ବି ନେଲି । ଏବେ ପୁଣି କଣ ପାଇଁ ଡିମାଣ୍ଡ ? ପାଞ୍ଚ ଲକ୍ଷଟଙ୍କା ଦେଇଥିଲି ଲୋକଟା ଯେ ଆଜି ଯାଏଁ, ଋଣ ଶୁଝି ଶୁଝି ଶୁଖିଗଲାଣି । ମୁଁ ନିଜେ ଯାଇଥିଲି ବୁଝାସୁଝା କରିବାକୁ, ତା ମା' କଣ କହିଲା ଜାଣିଛନ୍ତି ? ଛି... କହିବାକୁ ଲାଜ ଲାଗୁଛି ଆଜ୍ଞା । କହୁଛି କଣ ନା ଆମ ଝିଅକୁ ଏବେ ବୋଇଲେ ଏବେ ଡାକ୍ତର ବର ମିଳିବେ । ପାଞ୍ଚ ଲକ୍ଷ କଣ ଦେଖଉଚ, ଦଶ ଦେବେ । ସତରେ ସମ୍ପର୍କ ନ ହେଲା ବେଉସା ହେଇଗଲା । କଣ ଝିଅଙ୍କ ସଂଖ୍ୟା ଟିକେ କମ୍ ହେଇଗଲା ଯେ, ଏଇ ଝିଅର ମାବାପା ମାନେ ନିଜକୁ ନିଜେ ସର୍ବେସର୍ବା ବୋଲି ଭାବିନେଲେ !'

କମ୍ପ୍ୟୁଟର୍ ସେକ୍ସନ୍‌ର ଅଫିସର୍ ଭୂୟାଁ ବାବୁ ବଡ଼ବାବୁଙ୍କୁ ଅଟକାଇ ଦେଇ କହିଲେ, 'ଆପଣ ଯାହା କହିଲେ ସବୁ ଠିକ୍ ଆଜ୍ଞା । କିନ୍ତୁ କରାଯିବ କଣ ? ମନୋଜଟା ତେଣେ ପାଗଳ ହୋଇଗଲାଣି । ତିନି ସପ୍ତାହ ହେଲା





ହସପିଟାଲ୍‌ରେ ପଡ଼ିଛି । କେତେ ବାଜେ ଝିଅ ନାହିଁ କହିଲେ ତା ସ୍ତ୍ରୀଟା ? ଥରେ ବି ଦେଖିବାକୁ ଆସିଲାନି ।' କୁନା ବୁଝି ଯାଇଥିଲା ସେମାନେ ସବୁ ମନୋଜ ବିଷୟରେ କଥା ହେଉଛନ୍ତି । ମନୋଜ ତା ବିଭାଗରେ କାମ କରେ । ପାଞ୍ଚଲକ୍ଷ ଦେଇ ବାହା ହେଇଥିଲା । ବାହାଘର ପରେ ତା ସ୍ତ୍ରୀ ବାପଘରକୁ ଯାଇଥିଲା ଯେ ପୁଣି ଦେଢ଼ଲକ୍ଷ ଦାବୀ କରୁଛନ୍ତି । କେଉଁଠୁ ଏତେ ଟଙ୍କା ପାଇବ ଚିନ୍ତାରେ ବଗୃଗଟା ରାସ୍ତାରେ ଯାଉଥିଲା ବେଳେ ଦୁର୍ଘଟଣାର ଶୀକାର ହେଇଗଲା । ଗୋଟେ ଗୋଡ଼ ଭାଙ୍ଗିଯାଇ ମେରୁଦଣ୍ଡରେ ମାଡ଼ ହୋଇଗଲା ଯେ ତିନି ସପ୍ତାହ ହେଲାଣି ବଡ଼ ମେଡ଼ିକାଲରେ ପଡ଼ିଛି ।

'ନା, ଏମାନଙ୍କ ଉତ୍ପାତ ଅସହ୍ୟ ହେଲାଣି । କେତେ ଆଉ ସହିବା ? ସହିବାର ଗୋଟେ ଲିମିଟ୍ ଅଛି ନା ନାହିଁ । ଆମେ ପୁରୁଷ ହେଲେ ବି ଆମର ଏ ଦୁର୍ଦ୍ଦଶା ? ଛି, ଜୀବନଟା ଧିକ୍ ଲାଗିଲାଣି ।' ଭୁୟାଁ ବାବୁ କହୁଥିଲେ । 'ପୁରୁଷ କମିସନରେ ଅଭିଯୋଗ ଦେବାକୁ ପଡ଼ିବ । ଦରକାର୍ ହେଲେ ଧାରଣା ଦେବା । ନହେଲେ ଏମାନଙ୍କୁ ଉଚିତ ଶିକ୍ଷା ମିଳିବନି ।' ମହାନ୍ତି ବାବୁ କହୁଥିଲେ, 'ଏହାଦ୍ୱାରା କିଛି ହେବନି, ବୁଝିଲ । ଆମେ ସବୁ ନିଜକୁ ନିଜେ ବୁଝେଇ ଦେଲେଣି, ଯେ ଏଇୟା ହିଁ ଜୀବନ । ଯୌତୁକ ଦେଇ ଝିଅ ଆଣ, ସେ ଯାହା କହିଲେ ବି ମୁଣ୍ଡ ପାତି ଶୁଣ । ମୁହଁ ଖୋଲିଲେ, ଘରେ ଅଶାନ୍ତି । ଘରକୁ ପଳେଇ ଏମିତି ଅଧିକ ଯୌତୁକ ଆଣିବାର ଧମକ । କଣ କରିପାରିବା ଆମେ ? ଆମ ବାପ ଅମଳରୁ ଏମିତି ହିଁ ହୋଇ ଚାଲିଛି । ହଁ, ଶୁଣିଥିଲି, କାଳେ ମୋ ଜେଜେ ବାପା ବାହା ହେଲାବେଳେ ଝିଅଘର ଯୌତୁକ ଦେଇଥିଲେ । ଭୁବନେଶ୍ୱରରେ ପ୍ଲଟ୍ ଖଣ୍ଡେ ଆଉ ଅଡ଼ି କାରଟେ ଦେଇଥିଲେ । ହେଲେ ବାପା ବାହା ହେଲାବେଳକୁ ଅବସ୍ଥା ପୁରା ଓଲଟା ହୋଇଯାଇଥିଲା । ତଥାପି ଭାଗ୍ୟ ଭଲଥିଲା, ଏତେ ଯୌତୁକ ଦାବୀ ହେଉନଥିଲା । ତେଣୁ ବାପାଙ୍କ ବେଳକୁ ମାତ୍ର କେଇ ହଜାରରେ ବାହାଘର ହୋଇଗଲା । ମୋ ବେଳକୁ ଦେଢ଼ ଲକ୍ଷ ଦେଲେ ଭଲ ପ୍ରସ୍ତାବ ମିଳିଲା । ତଥାପି ଦେଢ଼ ଲକ୍ଷ କିଛି କମ ରକମ ନଥିଲା । ତେଣୁ, ବାପା ମୋତେ କହିଦେଇଥିଲେ, ତୋ ବାହାଘର ପାଇଁ ଅଧିକରୁ ଅଧିକ ଲକ୍ଷେ ହିଁ ଦେଇହେବ । ଯା ହେଉ ମୋ ବାହାଘର ହେଇଗଲା । ମୁଁ କିନ୍ତୁ ମୋ ପୁଅକୁ କହିଦେଇଛି, ତୋ ବାହାଘର ଚିନ୍ତା ତୁ କର । ଯୌତୁକ ଆଶା ମୋଠୁ ରଖିବୁନି । ମୁଁ ଟଙ୍କାଏ ଦେଇ ପାରିବିନି । କହିଲି, ତୁ କଲେଜରେ ଝିଅ ଖୋଜେ କି ରାସ୍ତାରେ ଘାଟରେ, ବଜାରରେ... ଯୋଉଠୁ ପାଉଛୁ ଝିଅ ଧରିଆଣ । ମୁଁ ଖୁସିରେ ବାହା କରେଇଦେବି । କିନ୍ତୁ ଯୌତୁକ ଟଙ୍କାଏ ଦେବିନି ।'

ଭୁୟାଁ ବାବୁ କହିଲେ, 'ଆପଣ ଭାଗ୍ୟବାନ ଥିଲେ ଆଜ୍ଞା, ଲକ୍ଷେରେ ଭଲ ପ୍ରସ୍ତାବଟିଏ





ପାଇଗଲେ । ମୁଁ ଖୋଦ୍ ସାଢ଼େ ତନିଲକ୍ଷ ଦେଇଛି । ଆଉ ମନୋଜ ବର୍ଗ୍ଗଗଟା ପାଞ୍ଚଲକ୍ଷ । କିଏ ଏମିତି ଗୁଲିବ ? ଦିନ ଆସିବ ଆଉ ଆମ ପିଲିମାନେ ବାହା ହେଇପାରିବେନି । ଏତେ ଏତେ ଯୌତୁକ ଟଙ୍କା କୋଉଠୁ ପାଇବା ? ସେମାନଙ୍କୁ ପାଠ ପଢ଼ାଇବା ନା ସେ ଟଙ୍କା ସଞ୍ଚୟ କରି ରଖିବା ଝିଅ ଆଣିବା ? କୁହନ୍ତୁ । ଆମ କକାର ପୁଅଟା ଭଲ ପାଠ ପଢୁଥିଲା । କକା ନିଶ୍ଚିନ୍ତ ଥିଲେ ଯେ ସେ କଲେଜରେ ପଢିବା ବେଳେ ହିଁ କୋଉଠି ଝିଅ ଦେଖିକି ତା କଥା ନିଜେ ବୁଝିବ । ହେଲେ ସେ ଥିଲା ଅଲଗା ମାଇଣ୍ଡର ପିଲା । ଡାକ୍ତରୀ ପଢ଼ିବ ବୋଲି ଜିଦ୍ କଲା । ଦେଢ଼ କୋଟିଟଙ୍କାର ଡୋନେସନ୍ ଦେଇ ତାମିଲନାଡୁରେ ପଢ଼େଇଲେ । ଅବଶ୍ୟ ସେ ଆଗରୁ କଣ୍ଡିସନ୍ କରିଦେଇଥିଲେ, ବାହାଘର ବେଳକୁ ଟଙ୍କାଏ ଦେବେନି । ହେଇ ସେ ସେଇଠି ପଢ଼ିଲା ଭିତରେ ତାମିଲ୍ ଝିଅଟେ ପସନ୍ଦ କରି ବାହାହେବ ବୋଲି ଠିକ୍ କରିଦେଲା । ହେଲା ଆମ ଭାଷା, ଜାତି ସଂସ୍କୃତି କିଛି ସେ ଝିଅ ଜାଣିନି, ହେଲେ ଝିଅ ଟେ ତ ? କକା ବାହାକରିଦେବେ ବୋଲି ଖୁସିରେ ହଁ କରିଦେଇଥିଲେ । ହେଲେ ଠିକ୍ ସମୟରେ ଝିଅର ବାପ ଜିଦ୍ ଧରିବସିଲା ଯେ ମୋ ଝିଅ ଡାକ୍ତରାଣୀ, କମସେ କମ୍ କୋଡ଼ିଏ ଲକ୍ଷ ଯୌତୁକ ନ ଦେଲେ ବିବାହ ହେଇପାରିବନି । କକାଙ୍କର ସମ୍ପତ୍ତି ଥିଲା ବୋଲି ବାହା କରିଦେଲେ । ହେଲେ ଭାବ ଆମ କଥା କିଏ ବୁଝିବ ? ଆମଘରେ ଏତେ ଟଙ୍କା କୋଉଠୁ ଆସିବ ? ଦେଖୁଛ ଦିନକୁ ଦିନ ଦରଦାମ ଯେମିତି ବଢ଼ିଲାଣି, ଟଙ୍କାଏ ସଞ୍ଚିବା ଭଳି ସାହାସ ହେଉନି ।’

ଟେବୁଲ୍ ପାଖରେ ଚା ପିଉଥିଲା ପିଉନ୍ ସଞ୍ଜୟ କହିଲା, ‘ସାର୍, ମୋ କଥା ମାନନ୍ତୁ । ଏ ସବୁ ରାଜନୀତିଆଙ୍କ ଚାଲ୍ । ଆମେ ଯଦି ଏହାକୁ ବିରୋଧ କରିବାନି ତ କାଲି ଆମ ଘରେ ଝିଅବୋହୁ ଦେଖିପାରିବାନି । ଚାଲନ୍ତୁ ପୁରୁଷ କମିସନ୍ ଅଫିସ ଆଗରେ ଧାରଣା ଦେବା । ମନୋଜ ଆଜ୍ଞାଙ୍କ ପାଇଁ ଆମେ ଅନ୍ତତଃ ଏତିକି ତ କରିପାରିବା । ସମସ୍ତେ ହଁ ଭରିଲେ । ସେଇଠୁ ସଭାର ଶେଷ ନିଷ୍କର୍ଷ ଏହା ବାହାରିଲା ଯେ ସମସ୍ତେ ମିଶି ପୁରୁଷ କମିସନ୍ ଅଫିସ ସାମନାରେ ଧାରଣା ଦେବେ । ସବୁ କର୍ମଚାରୀ ରାଜି ହୋଇଗଲେ । ଅପରାହ୍ନରେ ଅଫିସରେ ଅଣଆନୁଷ୍ଠାନିକ ଭାବରେ ନୋଟିସ୍ ବୁଲେଇ ଦିଆଗଲା । ଅନିଚ୍ଛା ସତ୍ତ୍ୱେ କୁନା ସେଥିରେ ଦସ୍ତଖତ କରିଦେଲା ।

ବୁଧବାର ସକାଳୁ ସକାଳୁ ସେ ଅଫିସ ବାହାରିଗଲା । ଅଫିସ ଖାଁ ଖାଁ ଖାଲି । ସବୁ କାହାନ୍ତି ବୋଲି ପଚାରିବା ପରେ ଜଣାପଡ଼ିଲା ଯେ ସବୁ ପୁରୁଷ କମିସନ୍ ଅଫିସ ଘେରାଉ କରିବାକୁ ଯାଇଛନ୍ତି । କୁନା ବି ଚାଲିଲା । ସତକୁ ସତ କମିସନ୍ ଅଫିସ ସାମନାରେ ଜନଗହଳି । ସେ ଯେତେବେଳେ ପାଖକୁ ଗଲା, ଦେଖିଲା ମନୋଜକୁ ହ୍ୱିଲ୍ ଚେୟାରରେ ବସେଇ ଦେଇ ସବୁ ତା





ପାଖରେ ଅଛନ୍ତି । ଠିକ୍ ସେତକ ବେଳେ ମିଡ଼ିଆ କର୍ମୀ ମାନେ ଆସି ପହଞ୍ଚିଗଲେ । ମନୋଜ କୁନାର ହାତକୁ ଧର ପାଖରେ ବସେଇଦେଲା । ସମସ୍ତେ ଜୋର୍ ଜୋରରେ ଚଲ୍ଲେଇ ଉଠିଲେ । ଆମର ଦାବୀ ପୁରଣ ହେଉ । ଯୌତୁକ ଆଇନ୍ ହାଏ ହାଏ । ନାରୀ ଅତ୍ୟାଚ୍ଚର ହାଏ ହାଏ । କୁନା ନରବରେ ବସିଥିଲା । ମିଡ଼ିଆବାଲା ନଜ କ୍ୟାମେରାର ଘନ ଘନ ଫୋଟୋ ଉଠେଇ ଚ୍ଛଲଥିଲେ । କୁନାର ମନରେ ଭୟ ସୃଷ୍ଟି ହେଉଥିଲା । ଯଦ ଏ ସବୁ ଖବର ଘରେ ତା ସ୍ତ୍ରୀ ଦେଖେ ତ ତା ଅବସ୍ଥା କଣ ହେବ ? ତେଣୁ ଘେରାଉ କାର୍ଯ୍ୟକ୍ରମ ସରୁ ସରୁ ସେ ଘରେ ଯାଇ ପହଞ୍ଚି ଯାଇଥିଲା । ଅନ୍ୟଦନେ ସନ୍ଧ୍ୟା ଛଅ ପରେ ଫେରୁଥିବା କୁନା ଆଜ ଦୋପହର ପରେ ପରେ ପହଞ୍ଚିଯିବା ଦେଖି ତା ସ୍ତ୍ରୀ ସନ୍ଦେହ କରବା ସ୍ୱାଭାବକ । ହେଲେ ଠିକ୍ ସମୟରେ ତା ବୋଉ ଆସି ତାକୁ ରକ୍ଷା କରଦେଲା । ପୂର୍ବାହ୍ନର କାର୍ଯ୍ୟକ୍ରମପରେ ହାଲିଆ ହୋଇଯାଇଥିଲା କୁନା ଶୋଇଗଲା ।

ଅପରାହ୍ନରେ ଉଠିଲା ବେଳକୁ ଘରେ ମହାଭାରତ ଚ୍ଛଲଛ । ତା ସ୍ତ୍ରୀ ଉଚ୍ଚ ସ୍ୱରରେ ଚଲ୍ଲେଇ ଉଠୁଛ । ଘଟଣା କଣ ଜାଣିବା ପାଇଁ ସେ ବାହାରଲା ବେଳକୁ ବ୍ୟାଗ ବନ୍ଧା ହୋଇ ତା ସ୍ତ୍ରୀ ଦାଣ୍ଡ ବୈଠକରେ ବସି ବାପାବୋଉ ସହତ ଯୁକ୍ତିତର୍କ କରୁଛ । କଥା କଣ ଜାଣିବା ପାଇଁ ସେ ଆଗକୁ ଯାଉଥିଲା, ତା ବାପା ଆସି ତା କାନ ଧର କହଲେ, 'ତୋତେ ଲାଜ ଲାଗୁନ । ବାହା ସାହା ହେଲାପରେ ବ ଏ ସବୁ କରୁଛୁ ?' କୁନା ବୁଝିପାରୁନଥିଲା । କୁନାବୋଉ କହଲା, 'ହଇରେ ତୁ ସେ ନିଆଁଜଳା କମିସନ୍ ପାଖକୁ ଯାଇଥିଲୁ ?' କୁନା କଣ କହବ କଛ ଭାବପାରୁନଥିଲା । ତା ସ୍ତ୍ରୀ କହଲା, 'ଟିଭିରେ ଚଲ୍ଲେଇ ଚଲ୍ଲେଇ କହୁଥିଲ ନା, ନାରୀ ଅତ୍ୟାଚ୍ଚର ହାଏ ହାଏ... ହଉ ଦେଖିବା । ମୁଁ କେତେ ଅତ୍ୟାଚ୍ଚର କରଛ ତମ ଉପରେ ? ହଁ, ତମେ ଏଇୟା ଶିଖିଚ ? ତମ ବାପାବୋଉ ଏୟା ଶିକ୍ଷା ଦେଇଛନ୍ତି ? ଛି ଛି... ଜାଣିଥିଲେ ମୁଁ ଏଠି ଜମା ବାହା ହେଇନଥାନ୍ତି । ମନା କରୁଥିଲ, ବାପା ଖାଲ ଜିଦ୍ ଧରଲେ ମୋ ସାଙ୍ଗର ପୁଅ ଟା ଭଲ ପୁଅଟା । ଘରେ ରହବ, କଛ ଖରାପ କାମ କରବନ.. ଓଃ ଓଃ ଏଇ ସବୁ ଥିଲା ତମ ମନରେ ନାଇଁ । ମୁଁ ଆଉ ଏ ଘରେ ଦଣ୍ଡେ ବ ରହବନ । ଓଲା କ୍ୟାବ୍ ଅର୍ଡ଼ର୍ କରଦେଇଛ । ଆସୁ ଆସୁ ପଳେଇବ । ହାଁ, ରେ । ସ୍ୱାମୀ ବୋଲି ସ୍ନେହରେ କଣ ରଖିଦେଲ, ମୁଣ୍ଡ କାମ କରୁନ ନାଇଁ ।'

ସେ ଯାହା ଭୟ କରୁଥିଲା, ତାହା ହିଁ ହୋଇଛ । କୁନାର ହାତପାଦ ଝାଳେଇ ଯାଉଛ । କଣ କହବ ବା କରବ କଛ ବୁଝିପାରୁନ । ସେ ଡର ଡର ତା ବୋଉକୁ କହଲା, ଆଜ ଅଫିସରୁ ସମସ୍ତଙ୍କୁ ସେଠାକୁ ଯିବାକୁ ବାଧ କରାଯାଉଥିଲା । ନ ଗଲେ ମୋ ଚ୍ଛକରୀ ପଳେଇଥାନ୍ତା । ତେଣୁ ଯାଇଥିଲ । ମନୋଜ ମୋତେ ଦେଖି ମୋ ହାତକୁ ଜାବୁଡ଼ି ଧରଲା । ସେତେବେଳେ ସେ ମିଡ଼ିଆ





କର୍ମୀମାନେ ଫୋଟୋ ଉଠେଇଦେଲେ । ମୋତେ ଯିବାକୁ ଜମା ଇଚ୍ଛା ନଥିଲା । ହେଲେ ସମସ୍ତେ ବାଧ୍ୟ କରିଲେ ବୋଲି...'

'ଓହୋ ହୋ... ଦୁଧ ଖାଉଛ ନା ? ସାନ ପିଲା ହେଇଛ ? ଚକୋଲେଟ୍ ଦେବେ ବୋଲି କହି ନେଇଯାଇଥିଲେ ?' ତା ସ୍ତ୍ରୀ ଚିଲ୍ଲେଇ ଉଠୁଥିଲା । 'ତମକୁ ବାହା ହେଇଛି, ତମ ଉପରେ ଦୟା କରିଛି । ବୁଝିଲ, ନହେଲେ ଏକା ଏକା ପାଗଳଙ୍କ ଭଳି ବୁଲୁଥାନ୍ତ । ତମ ବାପା ବୋଉ ଗୋଡ଼ହାତ ଯୋଡ଼ିବାରୁ ବାବା ହଁ କହିଥିଲେ । ନହେଲେ ମୋ ପାଇଁ ପ୍ରସ୍ତାବ ଅଭାବ ନଥିଲା ।'

କୁନା ଆଉ ତା ବାପାବୋଉ ସେମିତି ସ୍ଥାଣୁ ପାଲଟିଯାଇ ଠିଆ ହୋଇଥିଲେ । କଣ କହିବେ କଣ କରିବେ କିଛି ବୁଝିପାରୁନଥିଲେ । କିଛି ସମୟପରେ ବାହାରେ ଗାଡ଼ି ଲାଗିଲା । ଆଉ ତା ସ୍ତ୍ରୀ ପବନବେଗରେ ଘରୁ ବାହାରି ଚାଲିଗଲା । କୁନା କାନ୍ଦ କାନ୍ଦ ହେଉଥିବା ଦେଖି ତା ବାପା ରଘୁଆ କହିଲା, ତୁ କାହିଁକି କାନ୍ଦୁଛୁ । ତୋର କଣ ଭୁଲ । ଦେଖିଲୁନି କି କେମିତି ଅନ୍ୟାୟ ହେଉଛି ? ଯୌତୁକ ଦେଇକି ବାହା କରିବାପରେ ମଧ୍ୟ ଏମିତି ଅତ୍ୟାଚାର, ନା ସହିହେବନି । ଆମେ ନୀରବ ରହିଲେ ସବୁ ଅସୁବିଧା । କାହିଁକି ସରକାର ପୁରୁଷ କମିସନ୍ କରିଛନ୍ତି ? ଗୋଟେ କେସ୍ ଠୁକିଦେବ ଯେ, ଝିଅ ଆଉ ତା ପୁରା ପରିବାର ଜେଲରେ ବସି ଅଟା ପେଷୁଥିବେ । ଏମିତି କଥା ଚାଲିଥିବା ବେଳେ ଘର ବାହାରେ ଗାଡ଼ି ଅଟକିବାର ଶବ୍ଦ ଶୁଣାଗଲା । ସମସ୍ତେ ସେ ଆଡ଼କୁ ଚାହିଁଥିଲେ । ବସନ୍ତ ଝିଅକୁ ଧରି ଘରକୁ ଆସୁଥିଲା ।

ବୈଠକରେ ସମସ୍ତେ ନୀରବରେ ବସିଥିଲେ । ବସନ୍ତ କହିଲା, 'ଏମିତି ପିଲାଙ୍କ ଭଳି ହେଲେ ଚଳିବ ? ସେ ଯଦି ଅଫିସରେ ସମସ୍ତଙ୍କ ସହ ମିଶି ଯାଇଥିଲେ ତ ଯାଆନ୍ତୁ, ତତେ କଣ କେବେ ଅସୁବିଧା କରିଛନ୍ତି କି ? ସେ ସବୁ ବାହାର କଥା ମା । ତାକୁ ଛାଡ଼ । ଘର ବାହାରେ କେତେ କଣ କରିବାକୁ ପଡ଼େ । ଘରେ ସମସ୍ତେ ସ୍ନେହରେ ରହିବ ନା ନାଇଁ ?' ରଘୁଆ କିଛି କହିବ ବୋଲି ଭାବୁଥିଲା, କିନ୍ତୁ ବସନ୍ତ ତାକୁ ଅଟକାଇଦେଇ କହିଲା, 'ଆରେ ଭାଇ, ତମେ ତ ପଢୁଆ ଲୋକ । ଏ ସବୁ କେମିତି ହେବାକୁ ଦେଉଛ ? ତମେ ବୁଝେଇ ପାରିଲନି ? ଘରର ମର୍ଯ୍ୟାଦା ଘରେ ରହିଲେ ଭଲ । ତୁ ଯା ମା ଘର ଭିତରେ ତୋ ଜିନିଷ ସବୁ ରଖିଦେ । ମୁଁ ବାକି କଥା ବୁଝୁଛି ।' କୁନାସ୍ତ୍ରୀ ଘର ଭିତରକୁ ଚାଲିଗଲା । ତା ପଛେ ପଛେ କୁନାବୋଉ ଚାଲିଗଲା । ବସନ୍ତ ମୁହଁରୁ ଝାଳ ପୋଛି ଦେଇ କହିଲା, 'ବୁଝିଲ ବାପ । ଯୁଗ ବଦଳି ଗଲାଣି । ମୁଁ ତମ ଦୁଃଖ ବୁଝୁଛି, ହେଲେ ଏବେ ପରା ଝିଅମାନଙ୍କ ରାଜୁତି ଚାଲିଛି । ତମକୁ ହିଁ ଟିକେ ଆଡ଼ଜଷ୍ଟ କରିବାକୁ ପଡ଼ିବ । ତମ ଭାଗ୍ୟଭଲ ଏ ସବୁ ବିଷୟରେ ରଘୁ କହିବାରୁ ମୁଁ ବାଟରୁ ହିଁ ତାକୁ ବୁଝେଇ



ଆଣିଦେଲ । ନହେଲେ ତା ବୋଉ କାନରେ ଏ ସବୁ କଥା ଯଦ ପଡ଼ିଥାନ୍ତା, ତ ବୁଝିଲ ଏଠାରେ ତୃତୀୟ ବଶ୍ୱଯୁଦ୍ଧ ହୋଇଯାଇଥାନ୍ତା । ଆମେ ଟିକେ ବୁଝାମଣା କର ରହଗଲେ ଭଲ ଲାଗିବ, ନା କଣ ?’

କୁନା କାନମୁଣ୍ଡ ଆଉଁଷି ହେଇଗଲା ଆଉ ମନେ ମନେ ନଜ କାନ ମୋଡ଼ି ଗାଲରେ ଚଟକଣୀ ଦେଇ ଶପଥ କଲା ଆଉ ଯାହା ବ ହେଉ ସେ ପୁରୁଷ କମିସନ୍ ରାସ୍ତା ମାଡ଼ିବନାହିଁ ।

ବୀମା ନଗର, ଦ୍ୱତୀୟ ଗଳ

ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା



# ଆକଳନ



ଅଚ୍ୟୁତ କୁମାର ରଥ

ନର୍ଘଣ୍ଟର ପୂର୍ବରୁ ପହଞ୍ଚିବା ମୋର ଗୋଟେ ବଦଭ୍ୟାସ ।

ରବବାର ସକାଳ ପ୍ରଥମ ବସ୍ ଠିକ୍ ଛଅ'ଟାରେ । ମୁଁ କନ୍ତୁ ଅଭ୍ୟାସ ଅନୁଯାୟୀ ପହଞ୍ଚିଗଲ ପନ୍ଦର ମିନଟ୍ ପୂର୍ବରୁ । ଚଢ଼ିଲାପରେ ଜାଣିଲ, ମୁଁ ସେଇ ବସର ପ୍ରଥମ ଅଭ୍ୟାଗତ ଯାତ୍ରୀ । ସିଟ୍ ପୋଛୁଥିବା କ୍ଲନର୍ ମୋତେ ଦେଖିଲା ପୁଣି ନଜ କାମରେ ଲାଗିଗଲା । ତା ମୁହଁ ମୋତେ ମୁରୁକ ମୁରୁକ ହସିଲା ପର ଲାଗିଲା । ଲାଗିଲା, ସେ ଭାବୁଥିବ, ଏତେ ସୁନ୍ଦର ରବବାର ସକାଳକୁ ମାଟିକର ବସରେ ଚଢ଼ିଥିବା ଲୋକଟି ନଶ୍ଚୟ କେଡ଼େ ବୋକାଟେ ହେଇନଥିବ ।

ଜଣେ ଜଣେ କର ଯାତ୍ରୀ ଚଢ଼ିଲେ । ବସରେ ତଥାପି ଅନେକ ଖାଲି ସିଟ୍ ଥାଏ । ବସଷ୍ଟାଣ୍ଡ ଛାଡ଼ିଲା ବେଳକୁ ଆଦ୍ୟ ନଦୀଘର ସୂର୍ଯ୍ୟ ବ ଟିକେ ଉପରକୁ ଉଠି ସାରଥାନ୍ତ । ତଥାପି କେମିତି ଗୋଟେ ଖାଁ ଖାଁ ଲାଗୁଥାଏ ଗୁଡ଼ାଆଡ଼େ । ସୂର୍ଯ୍ୟ ବ ଅଳସେଇ ହାଇ ମାରୁଥାନ୍ତ । ଦୋକାନ ବଜାର ଖୋଲିବାକୁ ଆହୁର ଅନେକ ସମୟ ଥାଏ । ବାର ହୋଇପଡୁଥାଏ ରବବାର ବୋଲ ।

ସହର ଉପାନ୍ତରେ ବସ ଅଟକିଲା, କେଇ ମିନଟର ରହଣୀ । ଖରା ଠିକ୍ ମୋ ସିଟରେ ପଡୁଥାଏ । ତେଣୁ ଭାବିଲ, ଟିକେ ତଳକୁ ଓହ୍ଲେଇ ଛାଇରେ କଛି ସମୟ ବିତେଇବ । ଠିକ୍ ସେତକ ବେଳେ ଜଣେ ଶୁଭ୍ରବସ୍ତ୍ର ପରହିତ, ନାତଦୀର୍ଘ ଅଥଚ କ୍ଷୀଣକାୟ ଶରୀର, ଲମ୍ବା ନଶ ଦାଢ଼ିଥିବା ବ୍ୟକ୍ତି ଚଢ଼ିଲେ ବସ ଉପରକୁ । ପିଠିରେ ଗାନ୍ଧିବ୍ୟାଗ, ପାଦରେ କଠଉ, ହାତରେ ଜପାମାଳି, ଆଉ ମୁହଁରେ ଆକର୍ଷଣୀୟ ଦୀପ୍ତି । ସାଧୁ ସନ୍ୟାସୀର ଭାବ ସୁସ୍ପଷ୍ଟ । ମୋର କନ୍ତୁ ଆକଣ୍ଠ ଘୃଣା ଏଇ ଅସାଧୁ, ବ୍ୟଭିଚାରୀ, ଅନ୍ୟାୟ ସାଧୁନାମିତ ବ୍ୟକ୍ତିମାନଙ୍କୁ, ଦୂରଦର୍ଶନ ଓ ଖବରକାଗଜରେ ପ୍ରତଦନ ସେମାନଙ୍କ ଅନୈତକ କାରବାର ବଷୟରେ ଦେଖି ଆଉ ଶୁଣି ମନ ବଷାକ୍ତ ହୋଇଛି ।

ସିଏ ପଚାରୁଥାନ୍ତି କଣ୍ଡକ୍ଟରଙ୍କୁ, ଆମେ ସର୍ବମୋଟ୍ ଦଶଜଣ, ଆମପାଇଁ





ସିଟ୍ ହେବ ତ ? କଣ୍ଡକ୍ଟର ହସିଦେଇ କହିଲା, ଚଢ଼ନ୍ତୁ, ପୁରା ବସ ଖାଲି । ବାବା ମହାଶୟ ଜୋରରେ ପାଟିକଲେ, ଆରେ ଆସ, ପଛକୁ ଚାଲି ଆସ ସମସ୍ତେ । ବ୍ୟାଗମୁଣା, ପୋଟଳି ଧରି ସାତଜଣ ସ୍ତ୍ରୀଲୋକ ଓ ଦୁଇଜଣ ପ୍ରାପ୍ତବୟସ୍କ ପୁରୁଷ ବସ ଉପରକୁ ଚଢ଼ିଲେ ।

ସାତଜଣ ସ୍ତ୍ରୀ, ସମସ୍ତେ ମୋତେ ଦିଶୁଥାନ୍ତି 'ଆପେ ହାତୀ' ଗାଡ଼ିରେ ବୁହା ହୋଇ ହମିଦ୍ ମିଆଁ ଘରକୁ ଯାଉଥିବା ବୁଢ଼ୀ ଛେଳିପରି । କାହାରି ଜଣକ ମୁହଁରେ ଟିକିଏ ବି ସଗଗ ନଥାଏ । ମୁଁ ଭାବୁଥାଏ, କି ମିଥ୍ୟା ପ୍ରଲୋଭନ ନେଇ ଏଇ ଭ୍ରଷ୍ଟ ସନ୍ୟାସୀର ଅନୁଗାମିନୀ ହୋଇଛନ୍ତି ଏମାନେ ? ଏତେ ସରଳ, ଏତେ ଅପରିଣାମଦର୍ଶୀ !

ସନ୍ୟାସୀର ମୁହଁରେ ଉଜ୍ଜ୍ୱଳ ଆକର୍ଷଣୀୟ ହସ, ମୋ ହୃଦୟକୁ ଚିରି ଦେଉଥାଏ । ଏଇ ବିକୃତ ରୋଗୀମାନଙ୍କୁ ସବୁବେଳେ ସ୍ତ୍ରୀ ଲୋକଙ୍କ ସାହଚର୍ଯ୍ୟର ଆବଶ୍ୟକତା କଣପାଇଁ କେଜାଣି ? ସ୍ତ୍ରୀ ବିନା ଏମାନଙ୍କର ଜୀବନ ଅଚଳ ଯେମିତି ! ହେଲେ, ଆଜିକାଲି ଗାଡ଼ିରେ ଗାଈ ବୁହାହେଲେ ପୋଲିସର ଲୋକ ଖବର ଦେଉଛନ୍ତି, ଅଥଚ ଏଠି ମଣିଷ ଚାଲାଣକୁ ସଭିଏଁ କେମିତି ଚୁପଚାପ ବରଦାସ୍ତ କରି ନୀରବ ରହିପାରୁଛନ୍ତି ଏମିତି ?

ରହି ରହି ପଛକୁ ଫେରି ଦେଖୁଥାଏ ମୁଁ । ସ୍ତ୍ରୀ ଲୋକ ସବୁ ଚୁପ୍‌ଚାପ୍ ବସିଥାନ୍ତି, ନିଜ ନିଜ ସିଟ୍ ମାନଙ୍କରେ । ପାଟି ଶୁଭୁଥାଏ ତ କେବଳ ସେଇ ଭଣ୍ଡ ବାବାର । ତା ମନ ଭିତର ଖୁସି ଫୁଟି ପଡୁଥାଏ ଯେମିତି । ଅବା ପାଟି କରି ନିଜ ଭିତରର ହୀନମନ୍ୟତାକୁ ଚପାଇ ଦେବାର ପ୍ରୟାସ କରୁଥାଏ ସେ । ମୋ ଭିତରର କ୍ରୋଧ ସହସ୍ରଗୁଣିତ ହୋଇଯାଉଥାଏ । ବେଦାଗ୍ ଧଳା ବସ୍ତ୍ର ଭିତରର କଳଙ୍କିତ ବିବସ୍ତ୍ର ପୁରୁଷର କୁତ୍ସିତ ରୂପ ମୋ ଆଖି ଆଗରେ ନାଚି ଯାଉଥାଏ ।

ପ୍ରାୟ ଦେଢ଼ ଘଣ୍ଟାର ଯାତ୍ରାପରେ, କ୍ଲିନର୍ ଡାକଦେଲା, ଜାନକୀଦେବୀ... ଜାନକୀଦେବୀ... ଆଜ୍ଞା, ଜାନକୀଦେବୀ ଓହ୍ଲେଇ ଯାଆନ୍ତୁ । ମୁଁ ପରେ ବୁଝିଲି ଯେ ସେଇ ରହଣୀର ନାମ ଜାନକୀଦେବୀ ବୋଲି । ଭଣ୍ଡବାବା ଓ ତା ଅନୁଗାମୀ ସବୁ ସେଇଠି ଓହ୍ଲେଇଗଲେ, ପେଡ଼ିପୋଟଳି ସମେତ ।

ମୋ ଗନ୍ତବ୍ୟ ଆହୁରି ଅଧଘଣ୍ଟେ । ମନଟା ଗୋଳେଇ ଘାଣ୍ଟି ହେଉଥାଏ ତଥାପି । କଣ୍ଡକ୍ଟର ଟିକଟ୍ ପଇସା ଫେରେଇ ଆସୁଥାଏ ପଛପଟୁ । ମୋ ପାଖରେ କଣ୍ଡକ୍ଟର ପହଞ୍ଚୁ ପହଞ୍ଚୁ ମୁଁ ଆଉ ସମ୍ଭାଳି ପାରିଲିନାହିଁ, ପଚାରିଦେଲି, 'ଗୋଟେ ଭଣ୍ଡବାବା ଏତେ ସ୍ତ୍ରୀଲୋକ ଧରି ଆପଣଙ୍କ ଗାଡ଼ିରେ ନେଇଯାଉଛି, ଅଥଚ କେହି କିଛି କହୁନାହାନ୍ତି କେମିତି ? ଏଠି କ'ଣ ମଣିଷ





ନାହାନ୍ତି ?' କଣ୍ଡକ୍ଟର ମୋ ମୁହଁକୁ ଅନାଇଲା କିଛି ସମୟ କିଂକର୍ତ୍ତବ୍ୟବିମୁଢ଼ ହୋଇ । ମୁଁ ଭାବୁଥିଲି, ତା ଅସହାୟତା କଥା । ମୋ ମୁହଁରୁ ଚୁ... ଚୁ.. ବାହାରିବା ପୂର୍ବରୁ କଣ୍ଡକ୍ଟର ଗୋଟେ ଦୀର୍ଘଶ୍ୱାସ ନେଇ କହିଲା...

ଆପଣ ଏ ସହର ଓ ଏଠିକାର ଲୋକଙ୍କ ସହ ଅପରିଚିତ ବୋଧହୁଏ । ମୁଁ ବୁଝିପାରୁଛି ଆପଣ ବାବା ଭଳି ଦିଶୁଥିବା ମିଶ୍ରବାବୁଙ୍କ କଥା କହୁଛନ୍ତି । ସେ ବାବା ନୁହନ୍ତି । ସେ ଜଣେ ସ୍ୱନାମଧନ୍ୟ ସମାଜସେବୀ । ଇଞ୍ଜିନିୟରିଂ ପଢୁଥିବା ଏକମାତ୍ର ପୁତ୍ରର ଅସମୟ ତିରୋଧାନ ପରେ ସାମୟିକ ବୈରାଗ୍ୟରୁ ମୁକୁଳି ସେ ଆବୋରି ନେଇଥିଲେ ଏକ ନିଆରା ସମାଜସେବାକୁ । ନିଜ ପତ୍ନୀଙ୍କ ସହ ମିଶି ଉତ୍ସର୍ଗୀଦେଲେ ନିଜ ବାସଭବନକୁ 'ଜାନକୀଦେବୀ ଜରାଶ୍ରମ' ନାଁରେ ନିରାଶ୍ରୟ ବୃଦ୍ଧାବୃଦ୍ଧଙ୍କ ଉଦ୍ଦେଶ୍ୟରେ । ଦପତି ପତ୍ନୀ ମିଶି ଖୋଜି ଖୋଜି ଏକାଠି କଲେଣି, ପରିବାରରୁ ବିତାଡ଼ିତ ହୋଇଥିବା ଚାରିଶହରୁ ଅଧିକ ଅଲୋଡ଼ା ପୁରୁଷ ଓ ସ୍ତ୍ରୀ । ଅମାୟିକ, ଭଦ୍ର, ମିଷ୍ଟଭାଷୀ ଶ୍ରୀ ପତିତପାବନ ମିଶ୍ର ଏଇ ଅଞ୍ଚଳର ଗର୍ବ ଓ ଗୌରବ । ଆପଣଙ୍କ ଆକଳନ ସମ୍ପୂର୍ଣ୍ଣ ଅମୂଳକ ଓ ଭୁଲ । ବେଶଭୁଷା ପରିପାଟୀରୁ ମଣିଷ ଚିହ୍ନା ହୁଏନା, ଚିହ୍ନା ହୁଏ କର୍ମରୁ...

ମୋ ମୁହଁର ଭାଷା ହଜିଯାଇଥିଲା, କେବଳ ଦିଶୁଥିଲା ସେଇ ଦୀପ୍ତିମୟ ପୁରୁଷଙ୍କ ମୁଖମଣ୍ଡଳର ସ୍ମିତହାସ । ନିଜ ଅନ୍ତର୍ଦାହକୁ ପିଇ ନୀଳକଣ୍ଠ ସାଜିଥିବା ଦେବପ୍ରତିମ ମଣିଷଟିଏ, ଯିଏ ଅନ୍ୟ ପିଠିର ବୋଝକୁ ଟେକିବାରେ ସାହାଯ୍ୟ କରୁ କରୁ ନିଜ ପିଠିର ବୋଝକୁ ଭୁଲିଯିବାର କଳା ନେଇ ଜୀଇଁଚାଲିଛନ୍ତି...

ମୁଁ ନତମସ୍ତକ ହେଉଥିଲି, ମୋର ଆକଳନର ସେଇ ଭଣ୍ଡ ତପସ୍ୱୀଙ୍କ ବ୍ୟକ୍ତିତ୍ୱ ନିକଟରେ...

ସମ୍ବଲପୁର



# ଅଣୁ ଅଣୁରେ ବଜ୍ଞାନ



ବାଲ୍ମୀକି ନାୟକ

ହନ୍ଦୀ ଭାଷାରେ କୁହାଯାଏ - 'କଣ୍ କଣ୍ ମେଁ ହେ ଭଗବାନ୍' ଅର୍ଥାତ ପ୍ରତଟି ଅଣୁରେ ଭଗବାନ ବଦ୍ୟମାନ । ଏହା କହଥିବା ଲୋକ ଭଗବାନଙ୍କ ସର୍ବବଦ୍ୟମାନ ଗୁଣକୁ ମହମାମଣ୍ଡିତ କରବାପାଇଁ କହଥାଇପାରେ କନ୍ତୁ ଏହାକୁ ବଶ୍ୱାସ କରୁଥିବା ଲୋକମାନେ ଅଣୁକୁ ଖାଲ ଆଖିରେ ଦେଖ ପାରୁନଥିଲେ ବ ଅଣୁରେ ଭଗବାନ ଥିବା କଥାକୁ ସହଜରେ ହଜମ କର ଦେଉଛନ୍ତ । ଯେହେତୁ ଭଗବାନଙ୍କ ସତ୍ତାକୁ କୌଣସି ପ୍ରକାରେ ପ୍ରମାଣିତ କରଯାଇ ପାରବ ନାହିଁ, ତେଣୁ ତାଙ୍କ ନାମରେ ଯିଏ ଯେତେ ପ୍ରକାର ମିଛ ଓ ଗାଲୁଗପ କହଲେ ବ କେହ ଆପତ୍ତି କରବାର ନାହିଁ । କେବଳ 'ବଶ୍ୱାସେ ମିଳଇ ହର, ତର୍କେ ବହୁଦୂର' ହେଉଛ ସବୁ ସନ୍ଦେହ ଓ ପ୍ରଶ୍ନର ଅଟଳ ଉତ୍ତର ।

ବଜ୍ଞାନ ଶବ୍ଦର ଉତ୍ପତ୍ତି ପ୍ରଥମେ କେଉଁ ଯୁଗରେ ଓ କେଉଁ ମଣିଷ ଦ୍ୱାରା ହୋଇଥିଲା କହବା କଷ୍ଟକର । ବଜ୍ଞାନ ଶବ୍ଦର ଅର୍ଥ ଭାଷାକୋଷରେ ଅଛ । 'ବଶେଷ ରୂପେ ଜ୍ଞାନ', 'ଯେଉଁ ବଦ୍ୟାଦ୍ୱାରା କର୍ମ ବଶେଷରେ ପଟୁତା ଜନ୍ମେ' । ସେହଭଳ ବୈଜ୍ଞାନକ ଶବ୍ଦର ଅର୍ଥ 'ଅନୁସନ୍ଧାନୀ', 'ତତ୍ତ୍ୱଜ୍ଞାନୀ', ପ୍ରମାଣବାଦୀ, ମୀମାସାଂକ, ବଗ୍ରହକ, ବଜ୍ଞାନୀ ଅର୍ଥାତ ମାନବ ଜାତର ବକାଶରେ ବଜ୍ଞାନ ସାହାଯ୍ୟରେ ନଜର ଭୂମିକା ନର୍ବାହ କରୁଥିବା ଜ୍ଞାନୀ ମନୁଷ୍ୟକୁ ଆମେ ବୈଜ୍ଞାନକ କହପାରବା ।

ପ୍ରତଟି ଅଣୁରେ ଭଗବାନ ବଦ୍ୟମାନ ଅଛନ୍ତ କ ନାହିଁ, ଆଦମ କାଳରୁ ଆଜ ପର୍ଯ୍ୟନ୍ତ ମଣିଷମାନେ ଜାଣିବାକୁ ପ୍ରୟାସ କରୁଛନ୍ତ କନ୍ତୁ କୌଣସି ପ୍ରକାର ପ୍ରାମାଣିକ ତଥ୍ୟ ମିଳୁନଥିବାରୁ ସମସ୍ତେ ସନ୍ଦେହରେ ଥାଇ ଶୁଣା କଥାକୁ କେବଳ ବଶ୍ୱାସ କରଚାଲଛନ୍ତ । ସେଥିପାଇଁ ଅନେକ ତର୍କବତର୍କ ବ ଚାଲଛ । ଅପରପକ୍ଷରେ ପ୍ରତଟି ଅଣୁରେ ବଜ୍ଞାନ ରହଥିବା ତଥ୍ୟ ନଶ୍ଚିତ ଭାବରେ ପ୍ରମାଣିତ ହୋଇ ସାରଛ, ତେଣୁ ଏହ ତଥ୍ୟକୁ ଅସ୍ୱୀକାର କରବା କମ୍ବା ଅବଶ୍ୱାସ



କରବାର ପ୍ରଶ୍ନ ହିଁ ଉଠୁନାହିଁ । ବସ୍ତୁର ସବୁଠାରୁ କ୍ଷୁଦ୍ର ଅଂଶ ଅଣୁକୁ ଆଦମକାଳରେ କେହ ଖାଲ ଆଖିରେ ଦେଖି ପାରୁନଥିଲେ । ଆଜ ମଣିଷ ଦ୍ୱାରା ଉଦ୍ଭାବନ କରାଯାଇଥିବା ଯନ୍ତ୍ରଦ୍ୱାରା ଅଣୁକୁ ଦେଖିବା ସମ୍ଭବ ହୋଇପାରୁଛ । ଖାଲ ସେତକ ନୁହେଁ, ଅଣୁକୁ ବ୍ୟବହାର କର କେତେ କଣ ଆଶ୍ଚର୍ଯ୍ୟଜନକ ବସ୍ତୁ ଉଦ୍ଭାବତ ହୋଇପାରୁଛ ।

ମନରେ ପ୍ରଶ୍ନ ଉଠୁଛ - ମନୁଷ୍ୟପାଇଁ ସୁବଧା ସାଧନ ଗୁଡ଼ିକର ବକାଶ କରବା ଏବଂ ନଜର ବୁଦ୍ଧିବଳରେ ମନୁଷ୍ୟପାଇଁ ସଂସାରକୁ ସହଜ ଓ ସରଳ କରବା ଭଳ ପୃଥିବୀର ପ୍ରଥମ ବୈଜ୍ଞାନକ କଏ ଥିଲେ? ଯେତେବେଳେ ବଜ୍ଞାନକୁ ବଜ୍ଞାନ ବୋଲ କେହ ଜାଣିନଥିଲେ, ସେତେବେଳେ କ'ଣ କେହ ବୈଜ୍ଞାନକ ନଥିଲେ ? ନଶ୍ଚୟ ଥିଲେ । କାରଣ ଆମେ ପୁରାତତ୍ତ୍ୱ ଓ ପ୍ରାଚୀନ ସାହତ୍ୟ ମାନଙ୍କରୁ ଅନେକ ପ୍ରାଚୀନତମ ବୈଜ୍ଞାନକ ପରମ୍ପରାର ସୂଚନା ପାଉଛୁ । ବୈଜ୍ଞାନକ ବକାଶର ବଭିନ୍ନ ସ୍ତର ଏବଂ ଉପଲବ୍ଧ ବଷୟରେ ବ ଜ୍ଞାନ ପ୍ରାପ୍ତ ହେଉଛ । ଆମର ଜ୍ଞାନର ସୀମା କମ ହେଲେ ବ ଜ୍ଞାନ ସମାପ୍ତ ହୋଇଯାଏ ନାହିଁ । ନୂତନ ଜ୍ଞାନ ଆହରଣ କରବା ପାଇଁ ମନୁଷ୍ୟ ସର୍ବଦା ପ୍ରୟାସରତ । କଳ୍ପନା କରନ୍ତୁ - ଲକ୍ଷ ଲକ୍ଷ ବର୍ଷ ପୂର୍ବେ ଯେଉଁ ବ୍ୟକ୍ତି ତଳେ ପଡ଼ିଥିବା ପଥର ଖଣ୍ଡେ ହାତରେ ଉଠେଇ ଉପରକୁ ଫୋପାଡ଼ିଥିବ ଏବଂ ପଥରଟି ଯାଇ ଅନ୍ୟ ଯାଗାରେ ପଡ଼ିଥିବ । ସେତେବେଳେ ତା ମନରେ ଏକ ବଚାର ଆସିଥିବ - 'ଆରେ ଏଇଟି ତ ଗୋଟିଏ ଯାଗାରୁ ଅନ୍ୟ ଯାଗାକୁ ବ ଯାଇପାରେ ।' ଏହ ଭଳ ବଚାର କରପାରଥିବା ବ୍ୟକ୍ତି ହିଁ ସେହ ଯୁଗର ପ୍ରଥମ ବୈଜ୍ଞାନକ ହୋଇପାରେ । ସେହଭଳ ଆମେ ଅନ୍ୟ ଲୋକମାନଙ୍କ ସମ୍ପର୍କରେ ବ ଚନ୍ତା କରପାରବା । ପ୍ରଥମଥର ଯିଏ ଅଗ୍ନିର ଆବଷ୍କାର / ବ୍ୟବହାର କରଥିଲା । ପ୍ରଥମଥର ଯିଏ ପଥରରେ ଅସ୍ତ୍ର ତଆର କରଥିବ । ପ୍ରଥମ ଥର ଯିଏ ଗଛର ପତ୍ର ଓ ଛାଲକୁ ଶରୀର ପାଇଁ ବସ୍ତ୍ର ଭଳ ବ୍ୟବହାର କରଥିବ । ପ୍ରଥମଥର ଯିଏ ଖାଦ୍ୟ ଓ ଅଖାଦ୍ୟକୁ ଚହ୍ନଟ କରଥିବ । ପ୍ରଥମ ଥର ଯିଏ ପକ୍ଷୀଭଳ ଆକାଶରେ ଉଡ଼ିବା ଓ ପାଣିରେ ମାଛପର ପହଁରବା କଥା ଚନ୍ତା କରଥିବ । ସେହମାନେ ହିଁ ବାସ୍ତବରେ ପ୍ରାଥମିକ ସ୍ତରରେ ବୈଜ୍ଞାନକ ଥିଲେ, ଏଥିରେ ସନ୍ଦେହ ନାହିଁ ।

ସେହ ବୈଜ୍ଞାନକ ମାନଙ୍କ ମୌଳକ ବଚାର ଉପରେ ବାରମ୍ବାର ଗବେଷଣା କର ଆଜ ବଜ୍ଞାନ ବହୁତ ଆଗେଇ ଆସିଛ । ନତ ନୂଆ ନୂଆ ପ୍ରୟୋଗ ଦ୍ୱାରା ବଜ୍ଞାନ ମଣିଷ ପାଇଁ ସମସ୍ତ ପ୍ରକାର ସୁଖସାଧନ ଜୁଟାଇ ଦେଉଛ । ଆଧୁନକ ଯୁଗର ବୈଜ୍ଞାନକ, ଯିଏ ବଜୁଳୀ ଶକ୍ତି ଉଦ୍ଭାବନ କରଥିଲେ, ଯିଏ ଯୋଗାଯୋଗ ପାଇଁ ପ୍ରଥମେ ତାର ଓ ପରେ ବେତାର ଯନ୍ତ୍ର, ଟେଲଭଜନ,



ଇଣ୍ଟରନେଟ୍ ଆଦି ଉଦ୍ଭାବନ କରିଥିଲେ । ଚିକିତ୍ସା ବିଜ୍ଞାନ ଏତେ ଉନ୍ନତ ସ୍ତରକୁ ପହଞ୍ଚିଗଲାଣି ଯେ ମଣିଷ ଅକାଳମୃତ୍ୟୁକୁ ସହଜରେ ଏଡ଼ାଇ ଦେଇ ପାରୁଛି । ସେହିମାନେ ହେଉଛନ୍ତି ପ୍ରତିଟି ଅଣୁରେ ବିଜ୍ଞାନକୁ ଖୋଜି ପାଇଥିବା ବୈଜ୍ଞାନିକ ।

ବିଗତ ଯୁଗରେ ଗୋଟିଏ ଗୋଲ ଗଛ ଗଣ୍ଡିକୁ ଭୂମିରେ ଗଡ଼େଇ ଚକର ଆବିଷ୍କାର କରିଥିବା ପ୍ରଥମ ମଣିଷକୁ ଆମେ ବୈଜ୍ଞାନିକ ବୋଲି ନ ମାନିଲେ ବି ତାଙ୍କର ଅବଦାନକୁ ଉପେକ୍ଷା କରିଯାଇ ପାରିବନାହିଁ । ସେହିଭଳି ପ୍ରତ୍ୟେକ ଯୁଗରେ କିଛି କିଛି ବୈଜ୍ଞାନିକ ଥିଲେ । ଆମେ ସେହି ସମସ୍ତଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିବା ଉଚିତ ।

ମାନବ ମସ୍ତିଷ୍କର ବିକାଶ ଏତେ ଉଚ୍ଚ ସ୍ତରକୁ ଉଠିଯାଉଛି ଯେ ଆଜିର ଦଶବାର ବର୍ଷର ଛୁଆମାନେ ଏମିତି ସବୁ କାମ କରିପାରୁଛନ୍ତି ଯାହାକୁ ବୁଝିବା ପାଇଁ ଆମ ପୂର୍ବପୁରୁଷମାନଙ୍କୁ ହଜାର ହଜାର ବର୍ଷ ଲାଗିଥିଲା । ଏହି ପରିବର୍ତ୍ତନ କୌଣସି ତଥାକଥିତ ପ୍ରତିଟି ଅଣୁରେ ବାସ କରୁଥିବା ଭଗବାନ ଦ୍ୱାରା ହୋଇନାହିଁ । ବରଂ ବିଜ୍ଞାନ ଦ୍ୱାରା ପରିଚାଳିତ ଜୀବନଶୈଳୀ, ଶିକ୍ଷାପ୍ରଣାଳୀ ଓ ଅନୁକୂଳ ପରିବେଶ ଯୋଗୁଁ ସଂଭବ ହୋଇ ପାରିଛି । ଆଜି ବି ଆମେ ଦେଖିବା ଗତିଦିନ ଧର୍ମଶାସ୍ତ୍ର ପାଠ କରୁଥିବା ଏବଂ ମଠମନ୍ଦିରରେ ବସି ପୂଜା ପ୍ରାର୍ଥନା କରୁଥିବା ମଣିଷମାନଙ୍କର ବୌଦ୍ଧିକ ସ୍ତର ଉନ୍ନତ କରି ପାରୁନାହିଁ । ଧର୍ମଭୀରୁ ଲୋକମାନଙ୍କର ସରଳ ବିଶ୍ୱାସକୁ ପୁଞ୍ଜି କରି କେତେକ ତଥାକଥିତ ଧର୍ମଗୁରୁ ଧନ ରୋଜଗାର କରିବାର ଏକ ସରଳ ରାସ୍ତା ଅବଶ୍ୟ ପାଇଯାଉଛନ୍ତି । ବିଜ୍ଞାନ ସେମାନଙ୍କ ମତରେ ଅଜ୍ଞାନୀଙ୍କ ପାଠ ।

ପୃଥିବୀରେ ଜନ୍ମ ନେବାପରେ ମନୁଷ୍ୟ ନିରନ୍ତର ପ୍ରକୃତି ଉପରେ ଅନୁସନ୍ଧାନ ଓ ଗବେଷଣା କରିବାକୁ ଲାଗିଲା । ବିଗତ ଅନୁଭବ ଅନୁସାରେ କିଛି ପୁରୁଣା ବସ୍ତୁକୁ ତ୍ୟାଗକରି ନୂତନ ବସ୍ତୁକୁ ଗ୍ରହଣ କରିବା ଉଚିତ ଭାବିଲା । ସଭ୍ୟତାର ବିକାଶ ସହିତ ମଣିଷ ସମାଜ ଦୁଇଭାଗରେ ବାଣ୍ଟି ହୋଇଗଲେ । କିଛି ଲୋକ ନିତ ନୂତନ ତଥ୍ୟ ସନ୍ଧାନରେ ବ୍ୟସ୍ତ ରହିଲେ । ଆଉ କିଛି ଲୋକ ପୂର୍ବଜମାନଙ୍କ ଦ୍ୱାରା ପ୍ରଦତ୍ତ ଜ୍ଞାନକୁ ଅନ୍ତିମ ଜ୍ଞାନ ବୋଲି ଭାବି ଯାହା ଯେମିତି ଅଛି, ସେମିତି ଥାଉ ବୋଲି ମାନି ଚାଲିଲେ । ଅର୍ଥାତ, ଯଥାସ୍ଥିତିବାଦର ସମର୍ଥକ । କମ ସଂଖ୍ୟକ ବୈଜ୍ଞାନିକ ମାନଙ୍କ ଦ୍ୱାରା ଉଦ୍ଭାବିତ ବା ଆବିଷ୍କୃତ ହୋଇଥିବା ଭୌତିକ ସାଧନ ଗୁଡ଼ିକ ବିନା ଦ୍ୱିଧାରେ ବ୍ୟବହାର କରି ଜୀବନକୁ ସୁଖମୟ କରୁଥିଲେ ବି ମୁହଁରେ କହୁଛନ୍ତି - ପୂର୍ବ ଯୁଗରେ ସବୁକିଛି ଠିକ୍ ଥିଲା, ଭଲ ଥିଲା ।

ଯେଉଁ ଦେଶ ଯେତେ ଶୀଘ୍ର ଅତୀତର ମୋହରୁ ମୁକ୍ତ ହୋଇ ନୂତନ ତଥ୍ୟକୁ ମୁକ୍ତମନରେ





ଗ୍ରହଣ କରଛ, ସେହ ଦେଶ ଗୁଡ଼ିକ ଆଜ ବକଶିତ ଦେଶ ନାମରେ ପରଚତ । ଯେଉଁ ଦେଶର ଲୋକମାନେ ଅତୀତର ଅବୈଜ୍ଞାନକ ବଗ୍ଭରଧାର ଓ ରଢ଼ିବାଦୀ ପରମ୍ପରକୁ ତ୍ୟାଗ କରବାକୁ ସାହାସ କର ପାରୁନାହାନ୍ତ, ସେହ ଦେଶ ଗୁଡ଼ିକ ଆଜ ବକାଶଶୀଳ ଦେଶ ତାଲକାରେ ରହଛନ୍ତ । ଭରତ ବ ସେଥିରେ ଗୋଟିଏ । ଆମେ କ'ଣ କେବେ ବକଶିତ ତାଲକାରେ ଭରତର ନାମ ଦେଖିପାରବା ନାହିଁ ?

ଫ୍ଲାଟ୍ - ୧୦୧, ଡିଏସ୍ - ମାକ୍ସ, ସିଗଲ୍‌ନେଷ୍ଟ

ବସଭନ୍‌ପୁର, ଭର୍ଗୋନଗର

ବେଙ୍ଗାଲୁରୁ - ୫୬୦୦୪୯

ଦୂରଭାଷ - ୦୯୪୮୨୦୧୬୬୨୬୦



# ଭତ୍ତିହୀନ ବଶ୍ୱାସର ପ୍ରସାରଣ



ବାଲ୍ମୀକି ନାୟକ

ଭତ୍ତିହୀନ ବଶ୍ୱାସର ପ୍ରସାରଣ ବନ୍ଦ ହେଉ

ବୈଦ୍ୟୁତକ ଗଣମାଧ୍ୟମର ବକାଶ ଓ ପ୍ରଗତ ଯୋଗୁଁ ଟେଲଭିଜନ୍, ଇଣ୍ଟରନେଟ୍ ଓ ମୋବାଇଲ୍ ଫୋନ୍ ଜଗତରେ ଅଭୂତପୂର୍ବ କ୍ରାନ୍ତ ଆସିଛି । ସାରା ଦୁନଆର ଖବର ଯେକୌଣସି ଘରକୋଣରେ ବସି ଦେଖିବା, ଶୁଣିବା ଓ ଜାଣିବା ସମ୍ଭବପର ହୋଇପାରୁଛି । ଏହା ନଶ୍ଚିତ ଭାବରେ ମାନବ ସଭ୍ୟତାର ଚରମ ନ ହେଲେ ମଧ୍ୟ ପରମ ଉପଲବ୍ଧି ବୋଲ ମାନବାକୁ ହେବ । ଏହା ଦ୍ୱାରା ଲୋକମାନଙ୍କର ଜ୍ଞାନ ବଢୁଛି । କନ୍ତୁ ଏହା ଦ୍ୱାରା ସାଧାରଣ ମଣିଷମାନଙ୍କ ଭତରେ କେତେକ ଭତ୍ତିହୀନ ବଶ୍ୱାସ ମଧ୍ୟ ବୃଦ୍ଧି ପାଉଛି, ତାହା ହିଁ ଆଜର ଚନ୍ତାର ବଷୟ ।

ପ୍ରାକୃତକ ନୟମ ଅନୁସାରେ ଯେ କୌଣସି ଶକ୍ତିର ସୁସ୍ତରୁ ରୂପେ ବ୍ୟବହାର କଲେ ତାହା ମାନବଜାତର ମଙ୍ଗଳସାଧନ କରଥାଏ, କନ୍ତୁ ସେହ ଶକ୍ତିକୁ ଯଦ ଅପବ୍ୟବହାର କରାଯାଏ, ତେବେ ମାନବଜାତର ଅପୂରଣୀୟ ଅମଙ୍ଗଳ ସାଧନ କରଥାଏ । ଏହାର ସଦ୍ୟ ଉଦାହରଣ ହେଉଛି - ଆଜକାଲ ଟିଭ ଚ୍ୟାନେଲ ମାନଙ୍କରେ ବଭିନ୍ନ ପ୍ରକାର ଭତ୍ତିହୀନ ବଶ୍ୱାସକୁ ବଢ଼େଇ ଚଢ଼େଇ ପ୍ରସାରଣ କରାଯାଉଛି । ଟିଭ ଚ୍ୟାନେଲ୍ ମାନଙ୍କର ସଂଖ୍ୟା ଯେତେ ବଢୁଛି, ସେମାନଙ୍କ ପାଇଁ ସେଇ ଅନୁପାତରେ କାର୍ଯ୍ୟକ୍ରମମାନ ନର୍ମାଣ କରାଯାଉଛି । ଦର୍ଶକମାନଙ୍କର ସଂଖ୍ୟା ବୃଦ୍ଧି କରବାପାଇଁ ପ୍ରଯୋଜକମାନେ ନହାତ ଅବଶ୍ୱସନୀୟ, ଅବୈଜ୍ଞାନକ, ଅର୍ଥହୀନ ଓ ଚମତ୍କାରୀ ଦୃଶ୍ୟ ଉପରେ ଆଧାରତ କାର୍ଯ୍ୟକ୍ରମମାନ ତଆର କରୁଛନ୍ତ । ଏହ ସବୁ ଫଟୋ ଟ୍ରିକ୍ ଦୃଶ୍ୟ ଦେଖି ବୟସ୍କ ଲୋକମାନେ ଯେତକ ପ୍ରଭାବତ ହେଉଛନ୍ତ, ତା'ଠାରୁ ଅଧିକ ଛୋଟ ଛୋଟ ପିଲାମାନେ ପ୍ରଭାବତ ହେଉଛନ୍ତ । ଏହା ନଶ୍ଚୟ ଭାବରେ ଚନ୍ତାର ବଷୟ । କାରଣ ଭବଷ୍ୟତରେ ଆମର ସନ୍ତାନମାନଙ୍କୁ ଭତ୍ତିହୀନ ବଶ୍ୱାସର ବଷାକ୍ତ ଦୃଶ୍ୟ





ବୌଦ୍ଧିକ ସ୍ତରରେ ପଙ୍ଗୁ ବନେଇଦେବ । ସେମାନେ ମୁକ୍ତମନରେ କିଛି ନୂଆ କଥା ଚିନ୍ତା କରିପାରିବେନି ।

ଭିତ୍ତିହୀନ ବା ଅହେତୁକ ବିଶ୍ୱାସ ଆଜିର ନୁହେଁ, ଆଦିମ କାଳରୁ ମଣିଷ ମନରେ ଭରି ରହିଛି । ଆଗରୁ ଏହି ବିଶ୍ୱାସ ଆଞ୍ଚଳିକ ସ୍ତରରେ ସୀମାବଦ୍ଧ ହୋଇ ରହୁଥିଲା । ଗୋଟିଏ ଅଞ୍ଚଳର ଭିତ୍ତିହୀନ ବିଶ୍ୱାସ ଅନ୍ୟାନ୍ୟ ଅଞ୍ଚଳକୁ ସହଜରେ ପ୍ରଭାବିତ କରିପାରୁନଥିଲା । ଆଜିର ଦୁନିଆରେ ଟିଭି, ଇଣ୍ଟରନେଟ୍, ମୋବାଇଲ୍ ଫୋନ ଦ୍ୱାରା ଗୋଟିଏ ଖବର କ୍ଷଣକ ମଧ୍ୟରେ ସମଗ୍ର ଦୁନିଆରେ ବ୍ୟାପି ଯାଉଛି । ମାନସିକ ସ୍ତରରେ ଦୁର୍ବଳ ଥିବା ଏବଂ ବୈଜ୍ଞାନିକ ଦୃଷ୍ଟିକୋଣ ନଥିବା ମଣିଷମାନେ ଅତି ସହଜରେ ଏହାର ଶୀକାର ହୋଇଯାଉଛନ୍ତି । ବିଶେଷକରି ପିଲାମାନେ ଏହାକୁ ସତ୍ୟ ବୋଲି ମାନି ନେଉଛନ୍ତି ।

ଅନ୍ୟାନ୍ୟ ବିକଶିତ ଦେଶ ଅପେକ୍ଷା ଆମର ବିକାଶଶୀଳ ଦେଶରେ ଆଜିର ଦିନରେ ହଜାର ହଜାର ତଥାକଥିତ ଧର୍ମଗୁରୁ ବାବା, ମାତା, ସାଧୁ, ତାନ୍ତ୍ରିକ, ଜ୍ୟୋତିଷ ଓ ବାସ୍ତୁଶାସ୍ତ୍ରୀ ବିଭିନ୍ନ ଟିଭି ଚ୍ୟାନେଲ ସହ ବ୍ୟବସାୟିକ ସହବନ୍ଧିତା କରି ନିଜର ପ୍ରବଚନ ଓ ବସ୍ତୁ ଯଥା; ଧନଲକ୍ଷ୍ମୀ ଯନ୍ତ୍ର, ତାନ୍ତ୍ରିକ ମୁଦି, ରକ୍ଷା କବଚ, ଚମତ୍କାରୀ ତାବିଜ, ଲାଫିଙ୍ଗ୍ ବୁଦ୍ଧ, ଲକି ପ୍ରିଙ୍ଗ୍, ଲଭ୍ ବାର୍ଡ୍ ଆଦି ବିକ୍ରୀ କରୁଛନ୍ତି । ଟିଭି ଚ୍ୟାନେଲରେ ନିହାତି ଅଶୋଭନୀୟ ବିଜ୍ଞାପନ ଆଦି ଦେଖିବାକୁ ମିଳୁଛି । ଯଥା - ବାବା କହିବେ କିପରି ପରକୀୟା ପ୍ରୀତିରୁ ସ୍ୱାମୀଙ୍କୁ ଫେରାଇ ଆଣିବେ । ବ୍ୟବସାୟରେ କିପରି ବୃଦ୍ଧି ହେବ । ଗୃହକଳହରୁ କେମିତି ମୁକ୍ତି ପାଇବେ । ଦଶଦିନ ମଧ୍ୟରେ ବିବାହ ହେବ । ମାସେ ଭିତରେ ବିଦେଶ ଗମନ ହେବ । କୋର୍ଟ୍ କଚେରୀରେ କେସରେ ଜିତିବାର ଉପାୟ । ଶତ୍ରୁସଂହାର ଆଦି ଅନେକ କିଛି ଚମତ୍କାର ଉପାୟରେ ହୋଇପାରିବାର ପ୍ରତିଶୃତି ଆଦି ଦିଆଯାଉଛି ।

ଆମର ସମ୍ବିଧାନରେ ଅନ୍ଧବିଶ୍ୱାସକୁ ପ୍ରଚାର କରିବା ଏବଂ ଚମତ୍କାରୀ ଢଙ୍ଗରେ ରୋଗୀକୁ ଚିକିତ୍ସା କରିବା ପାଇଁ ଦାବୀ କରିବା ଏକ ଅପରାଧ ବୋଲି ଆଇନ ପ୍ରଣୟନ ହୋଇଛି । କିନ୍ତୁ ଆଇନକୁ ମାନୁଛି କିଏ ? ଆଇନ ଅମାନ୍ୟ କରୁଥିବା ବ୍ୟକ୍ତି ବା ସଂସ୍ଥାକୁ ଦଣ୍ଡିତ କରିବାର ଅଧିକାର ପୋଲିସ ଓ ସରକାର ଉପରେ ରହିଛି । ପୋଲିସ ଓ ସରକାରୀ ଅଧିକାରୀମାନେ ଯଦି ନିଜେ ଅନ୍ଧବିଶ୍ୱାସର ଶିକାର ହୋଇ ରହିଥାନ୍ତି, ତେବେ ଆଇନ ଅମାନ୍ୟ କରୁଥିବା ବାବା, ମାତା, ତାନ୍ତ୍ରିକ, ଜ୍ୟୋତିଷ, ଟିଭି ଚ୍ୟାନେଲର ମାଲିକ, ସାମ୍ବାଦିକମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବ କିଏ ? ସୁଖର କଥା ଯେ ଗତବର୍ଷ ଓଡ଼ିଶାର ସଚେତନ ନାଗରିକମାନେ କାନୁନକୁ ନିଜ





ହାତକୁ ନେଇ ସାରଥୀ ଓ ସୁରବାବାର ଭଣ୍ଡ କାରଖାନାର ପର୍ଦ୍ଦାଫାସ କରଥିଲେ । ପୋଲସ ଦୋଷୀକୁ ଧରବା ବଦଳରେ ପ୍ରତବାଦ କରୁଥିବା ଜନତାଙ୍କୁ ଗୋଡ଼େଇ ଗୋଡ଼େଇ ପିଟିଥିଲା । ପୋଲସ ଥାନାରେ ଦେବୀ ଦେବତାଙ୍କୁ ପୂଜାଅର୍ଚ୍ଚନା କରାଯାଏ । ସତେ ଯେମିତ ଭଗବାନ ଦୋଷୀଙ୍କୁ ଧରବାପାଇଁ ପୋଲସଙ୍କୁ ସାହାଯ୍ୟ କରବେ । ଯଦ ତାହା ସତ ହେଉଥାନ୍ତା, ତେବେ ଦୋଷୀଙ୍କୁ ଧରବାପାଇଁ ପୋଲସକୁ ବେଳେ ବେଳେ ଦୀର୍ଘ ସମୟ ଲାଗୁଛ କାହିଁକ ? ବେଳେ ବେଳେ ତ ଦୋଷୀ କଏ ଆଦୌ ଜଣାପଡୁନାହିଁ କମ୍ବା ଧରା ପଡୁନାହିଁ ।

ଦେଶର ଅଧିକାଂଶ ଟିଭ ଚ୍ୟାନେଲ କର୍ପୋରେଟ୍ ସଂସ୍ଥାମାନଙ୍କ ଦ୍ୱାରା ପରଚାଳତ । ଗତଦନ ଟିଭ ଚ୍ୟାନେଲ ଚଳାଇବା ପାଇଁ ସାଟେଲାଇଟ୍ ଭଡ଼ା, କର୍ମଚାରୀ ଓ କଳାକାରମାନଙ୍କ ଦରମା, ଷ୍ଟୁଡ଼ିଓ ନର୍ମାଣ ଓ ପରଚାଳନା ଖର୍ଚ୍ଚ ବ୍ୟତୀତ ଲାଭ ପାଇବାକୁ ହେଲେ ବ୍ୟବସାୟିକ ପଦ୍ଧତ ଅନୁସରଣ କରବାକୁ ପଡ଼େ । ଏଥିରୁ ଗୋଟିଏ ସହଜ ପନ୍ଥା ହେଉଛ - ଦର୍ଶକମାନଙ୍କ ଦୁର୍ବଳତା ଓ ରୁଚକୁ ଆଦ ଆଗରେ ରଖି କାର୍ଯ୍ୟକ୍ରମମାନ ନର୍ମାଣ କରବା । ଯାହା ଦ୍ୱାରା ଟିଭ ଚ୍ୟାନେଲ ମାନଙ୍କରେ ଦର୍ଶକ ମାନଙ୍କ ସଂଖ୍ୟା ବୃଦ୍ଧି ପାଇଥାଏ (ଟିଆର୍‌ପି) । ଗଣମାଧ୍ୟମର ମୌଳକ ନୈତକତା ଓ ଦାୟିତ୍ୱବୋଧ ସବୁ ପଛରେ ରହଯାଏ । କାର୍ଯ୍ୟକ୍ରମ ଦ୍ୱାରା ବ୍ୟକ୍ତି ବା ସମାଜ କେତେ ପଥବଣା ହେଉଛ, କଏ କେତେ କ୍ଷତଗ୍ରସ୍ତ ହେଉଛ, ସେଥିପାଇଁ କେହ ଧ୍ୟାନ ଦଅନ୍ତ ନାହିଁ ।

ସକାଳୁ ଉଠିଲେ ଯେଉଁ ଘରେ ବାପା ଓ ମାଆ ଟିଭରେ ଦୈନକ ରାଶିଫଳ ଦେଖି ଦନର କାର୍ଯ୍ୟପନ୍ଥା ନର୍ଦ୍ଧାରଣ କରନ୍ତ, ସେହ ଘରର ପିଲାମାନଙ୍କର ବୌଦ୍ଧିକ ବକାଶ ଘଟିବ କପର ? ବୈଜ୍ଞାନକ ଚନ୍ତାଧାରା ଜାଗ୍ରତ ହେବ କପର ? ଅଧିକାଂଶ ଖବରକାଗଜ ଓ ପତ୍ରିକାରେ ଦୈନକ ରାଶିଫଳ କମ୍ବା ସାପ୍ତାହକ ବା ମାସିକ ଭାଗ୍ୟଫଳ ପ୍ରକାଶ କରୁଛନ୍ତ । ନତ ଯେଉଁମାନେ ସେ ସବୁ ପଢୁଛନ୍ତ ଓ ବଶ୍ୱାସ କରୁଛନ୍ତ, ସେମାନେ ବୁଝିପାରୁନାହାନ୍ତ ଯେ, ସାରା ପୃଥିବୀର ଜନ ସଂଖ୍ୟା କଣ କେବଳ ବାର ଗୋଟି ରାଶିରେ ହିଁ ବଭକ୍ତ ? ସୁଧୀ ପାଠକ ଓ ଟିଭ ଦର୍ଶକ ଯଦ ଭତ୍ତିହୀନ ବଶ୍ୱାସକୁ ପ୍ରଚାର କରୁଥିବା ଚ୍ୟାନେଲକୁ ଦେଖିବା ବନ୍ଦ କରଦେବେ, ତେବେ ଯାଇ ସମସ୍ତଙ୍କର ମଙ୍ଗଳ ହେବ ।

ଫ୍ଲାଟ୍ - ୧୦୧, ଡିଏସ୍ - ମାକ୍ସ, ସିଗଲ୍‌ନେଷ୍ଟ ବସଭାନ୍‌ପୁରା, ଭର୍ଗୋନଗର

ବେଙ୍ଗାଲୁରୁ - ୫୬୦୦୪୯ ଦୂରଭାଷ - ୦୯୪୮୨୦୧୬୨୬୦





# ଟୁକୁ



ଅରବନ୍ଦ ଆଗ୍ରର୍ଯ୍ୟ

ସେ ସେତେବେଳେ ଅଷ୍ଟମ ଶ୍ରେଣୀରେ ପଢୁଥାଏ । ଦନେ ଉପରବେଳା ଖେଳାଖେଳ ସାର ଧୁଳଧୁସରତ କଳେବର ନେଇ ଘର ଭତରକୁ ପଶୁ ପଶୁ କକେଇ କହଲେ, "ଆରେ ଟୁକୁ, ତୋ ଲେଖାଟିଏ ଗୋଟିଏ ବହରେ ବାହାରଛ । ହେଇ ନେ ସେ ବହ । ଆଜ ପୋଷ୍ଟରେ ଆସି ପହଞ୍ଚିଲ ।" ଏତକ ଶୁଣି ସେ ଖପ୍ କର ବହଟା ତାଙ୍କ ହାତରୁ ଟାଣିନେଲ । ସେହ ଦନଟିକୁ ସେ କେବେ ବ ଭୁଲ ପାରୁନାହିଁ । ପ୍ରଥମଥର ପାଇଁ ତାର ଗୋଟିଏ ଲେଖା କୌଣସି ପତ୍ରକାରେ ପ୍ରକାଶିତ ହୋଇଥିଲ । ଏଥିପାଇଁ ନଜକୁ ଅଲଗା ମନେ କରୁଥାଏ । ଲାଗୁଥାଏ ସେ ତା ସାଙ୍ଗମାନଙ୍କ ଠାରୁ ବହୁତ ଆଗରେ । ସତେ ଯେମିତ ସେ କଛ ନୂଆ କର ପକେଇଛ । କନ୍ତୁ ଆଜ କାହିଁକ ସେମିତ ଲାଗୁନ ! ଅନେକ ଲେଖା ଅନେକ ବହରେ ପ୍ରକାଶିତ ହେଉଥିଲେ ସୁଦ୍ଧା ଆଉ ସେମିତ ଉଦ୍ଦାମତା ଦେଖାଯାଉନ । ଅବଶ୍ୟ ଅନେକେ ଏହାକୁ ବାଜେ କାମ କହଛନ୍ତ, କେହ କେହ ତାଗିଦ୍ ବ କରଛନ୍ତ ଯେ ଏହା ଦ୍ୱାରା ସମୟ ନଷ୍ଟ ହେଉଛ । କାରଣ ସେ ଏବେ ଶିକ୍ଷିତ ବେକାର । ତା' ମନର ଭବନା ଗୁଡ଼ିକୁ ସେ ଯଦ କଲମ ଆଉ କାଗଜରେ ପ୍ରକାଶ କରେ, ସେଗୁଡ଼ାକ ସମୟ ନଷ୍ଟ କରାଯାଉଛ ବୋଲ କୁହାଯାଏ । କନ୍ତୁ ସେ ଆଉ ବା କଣ କରବ ? ଏହା କଣ ସତରେ ସମୟ ନଷ୍ଟ କରବା ବଷୟ ?

ଆଜ ସେ ଯଦ ଉଚ୍ଚପଦସ୍ଥ ଅଧିକାରୀଟିଏ ହୋଇଥାନ୍ତା, ତେବେ ବୋଧହୁଏ ତାର ଏହ ଗୁଣଟାକୁ ଅନେକ ତାର ହବ ବା ଅଭ୍ୟାସ ବୋଲ କହଥାନ୍ତେ । କମ୍ବା ସେ ଯଦ କୌଣସି ପୁରସ୍କାର ପାଇଥାନ୍ତା ତା ହେଲେ ବ ତାର ଲେଖାକୁ ନେଇ ଅନେକେ ନଜ ସମୟ ନଷ୍ଟ କରୁଥାନ୍ତେ । କନ୍ତୁ ସେ ସବୁ ତ ହେଉନ ! ହେଲେ ସେ କନ୍ତୁ ଲେଖିବା ଛାଡ଼ିନ ।

ସକାଳୁ ସକାଳୁ ଟୁକୁ ବସିପଡ଼ିଥିଲ ତା ପଢ଼ା ଟେବୁଲ୍ ପାଖରେ । ତା





ଜୀବନର ସବୁଠାରୁ ଭଲ ସାଥୀ । ପ୍ରତଦନ ସକାଳ ଠିକ୍ ସାତଟା ବାଜଲେ ସେ ଏମିତ ବସିପଡ଼େ ଟେବୁଲ୍ ପାଖରେ । ସବୁଦନ ପର ବସି ପଢ଼େ । କ୍ଲାସ୍ ପରେ କ୍ଲାସ୍ ଅନେକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲଣି ସେ । ସମସ୍ତଙ୍କ ପର ସେ ବ ଅଧିକରୁ ଅଧିକ ପଢ଼ିଗ୍ଲଛ । ମେଧାବୀ ଛାତ୍ର କହପାରବେ, ଅବଶ୍ୟ ଅତ ବେଶୀ ମାର୍କ ନ ରଖିଲେ ସୁଦ୍ଧା ସେ କନ୍ତୁ କେବେ ବଫଳ ହୁଏନ । କନ୍ତୁ ସେ ଦନ ସେ ପଢ଼ିବା ପାଇଁ ବସିନଥିଲ । କାରଣ ପଢ଼ା ତ ତା ବାଟରେ ଗ୍ଲଛ । ବର୍ତ୍ତମାନ ତା କାନ୍ଧରେ ବଗଟ ବୋଝ । ଘରର ବଡ଼ପୁଅ ସେ । ତା ତଳକୁ ତନତନଟା ସାନ ଭଉଣୀ । କେହ ବାହା ହୋଇନାହାନ୍ତ । ବାପାଙ୍କ ଚ୍ଚକରୀ ଆଉ ମାତ୍ର ଦୁଇବର୍ଷ ରହଲ । ସେ କଣ କରବ ? ଭବଷ୍ୟତ ଚନ୍ତା ତାକୁ ଘାରୁଥିଲ । ପଢ଼ିବ ଆଉ କଣ ? କାଗଜ କଲମ ଧର ଲେଖିବସିଲ ୟାଡୁ ସ୍ୟାଡୁ କଛ । ତାର ମନକଥା ଯାହା ସବୁ କାଗଜରେ ଉତାର ଦେଇଥିଲ ସେ । ମନକୁ ହାଲକା କରବା ପାଇଁ ଏ ସବୁ ବ୍ୟବସ୍ଥା । କନ୍ତୁ ସମସ୍ତେ କଣ ସେଇଟା ବୁଝନ୍ତ ? ବାପାଙ୍କ ପାଦ ଶବ୍ଦ ଶୁଭଲ ପଛଆଡୁ । ବାପାଆସି ଟେବୁଲ୍ ପାଖରେ ଠିଆ ହୋଇ କାନ୍ଥ ଆଲମିରରୁ କଣ ଗୋଟେ ବହ ବାହାର କରୁ କରୁ ଟୁକୁର ଲେଖା ଉପରେ ଆଖି ପକାଇଲେ । କଛ ସମୟପରେ କହଲେ ;

"ଏତକ ସମୟ ଯଦ କମ୍ପିଟେଟିଭ୍ ପରୀକ୍ଷା ପାଇଁ ଦଅନ୍ତ ନା ! ଛାଡ଼ ମୋ ଭାଗ୍ୟ..." ଆଉ ବଶେଷ କଛ ନ କହ ବହଟାକୁ ଧର ଚ୍ଚଲଗଲେ । ଟୁକୁ ଲେଖୁଥିବା ବାକ୍ୟଟା ଅସମ୍ପୂର୍ଣ୍ଣ ରହଗଲ । ମନେ ହେଉଥିଲ କଲମ ଆଉ ତା କଥା ମାନୁନ । ହାତଟା ସ୍ଥାଣୁ ପାଲଟି ଯିବାପୂର୍ବରୁ ସେ କାନ୍ଥରେ ଝୁଲାଇଥିବା ନଜ ସାର୍ଟକୁ ଗଳେଇଦେଇ ଘରୁ ବାହାର ଗଲ । ସାଇକେଲର ଚ୍ଚବ ଖୋଲଦେଇ ବାହାରକୁ ଯିବାପୂର୍ବରୁ ମା'ର ଡାକ କାନରେ ପଡ଼ିଲ, "ଆରେ ଟୁକୁ ! କୁଆଡ଼େ ବାହାରଲୁ ? ଗହମ ଗଣ୍ଡାକ ପର୍ ପେଷେଇ ଦେଇଥାନ୍ତୁ । ବାପାଙ୍କ ପାଖରେ ତ ସମୟ ନାହିଁ । ନେଇ ଯାଆ ।" ମା'ର ଡାକରେ ଅପୂର୍ବ ଶକ୍ତି ଥାଏ । ବାଧ ହୋଇ ପଛକୁ ଫେରଲ ଆଉ ଗହମ ବ୍ୟାଗକୁ ସାଇକେଲ୍ ହ୍ୟାଣ୍ଡଲ୍‌ରେ ଝୁଲେଇ ଦେଇ ଦାଣ୍ଡ ଗେଟ୍ ପାରକର ରାସ୍ତାରେ ଗଡ଼ିଚ୍ଚଲଲ ।

ସାଇକେଲ ଚ୍ଚଲଥାଏ ଆଉ ଟୁକୁ ମନରେ ଭାବନାମାନେ ଜନ୍ମ ନେଉଥାନ୍ତ । ତା' ନଜ ଜୀବନ କଥା, ସେ ପରବାର ପାଇଁ କଣ କରଛ ? ବଡ଼ ପୁଅ ହୋଇ ସୁଦ୍ଧା ବର୍ତ୍ତମାନ ପର୍ଯ୍ୟନ୍ତ ନଜ ଗୋଡ଼ରେ ଠିଆ ହୋଇପାରନାହିଁ । ସମସ୍ତଙ୍କ ଦୃଷ୍ଟିରେ ସତେ ଯେମିତ ଏଇଟା ତା ସବୁଠୁ ବଡ଼ ପାପ । ଯେଉଁ ପିତାମାତା ତା ପାଇଁ ଅନେକ ତ୍ୟାଗ ଦେଇଛନ୍ତ ସେମାନଙ୍କ ପାଇଁ ସେ କଣ କରଛ ? ନା ତା ଗଳ୍ପ କବତା ଯେତେ ଲେଖିଲେ ସୁଦ୍ଧା ସେ ସବୁ କନ୍ତୁ ସେ ତ୍ୟାଗର ପ୍ରତଦାନ





ବୋଲି ଧରାଯିବନାହିଁ । ସେ ତ ଆଉ କିଛି କରିପାରିବ ନାହିଁ ।

ବାଟରେ ଦେଖାହେଲା ସୁଧାଂଶୁ । ଖୁବ୍ ଚିକ୍କଣ ଦେଖାଯାଉଥାଏ । ଏଇ ଅଳ୍ପଦିନ ହେବ ଚାକିରୀଟିଏ କରିଛି । ତେଣୁ ଚିକ୍କଣ ଦେଖାଯିବା ସ୍ୱାଭାବିକ । ଅନେକ ପୁରୁଣା କଥା ସବୁ ପଡ଼ିଲା । କେମିତି କଲେଜର ଦିନ ସବୁଥିଲା । କି ଆରାମରେ ଦିନ ସବୁ ବିତୁଥିଲା । ଚିନ୍ତା ବୋଲି କିଛି ନଥିଲା । କିନ୍ତୁ ସେଠୁ ବାହାରି ଆସିଲା ପରେ ପରେ ଆରମ୍ଭ ହୋଇଗଲା ଦାୟିତ୍ୱବୋଧର ଲମ୍ବା ତାଲିକା । ସେ ଲିଷ୍ଟର ସତେ ଯେମିତି ଅନ୍ତ ନଥିଲା । ଏମିତି କଥା ପଡୁ ପଡୁ କଥା ଯାଇ ଉଠିଲା ଲେଖା ଲେଖି ଉପରେ । ସୁଧାଂଶୁ ପଚାରିଲା, "ଆରେ ! ତୁ କଣ ନୁଆ ନୁଆ ସବୁ ଲେଖୁଛୁ କହୁନୁ ତ ? ସବୁଥର ଦେଖାହେଲେ ତୋ ତୋର ନୁଆ ଲେଖା କଥା କହିଥାଉ । ଆଜି କଣ କିଛି କହୁନୁ ?"

ଶୁଖିଲା ହସଟିଏ ହସିଦେଇ ସେ କହିଲା, "ଛାଡ଼ଭାଇ । ଲେଖାଲେଖିରୁ କଣ ମିଳିବ ? ଲେଖାଟା ତା ବାଟରେ ଚାଲିଛି । କିଛି ଅନୁଭୂତି ଆଉ କିଛି କାଳ୍ପନିକତାକୁ ନେଇ । ତାକୁ ନେଇ କଣ ମଣିଷ ବଞ୍ଚିପାରେ ? ସେଥିରେ କଣ ଡାଲି ଚାଉଳ କିଣାଯାଇପାରେ ? ପରିବାରର ଭରଣପୋଷଣ କରିହୁଏ ?"

କଥା ନ ସରୁଣୁ ଟୁକୁ ମୁହଁକୁ ଭଲକି ଚାହିଁ ସୁଧାଂଶୁ କହିଲା, "କିରେ, ଆଜି କଣ ଘରେ କିଛି ଝଗଡ଼ା ହୋଇଛି କି ? ମଉସା କଣ କିଛି କହିଦେଲେ ନା କଣ ?"

"କିଏ କଣ କହିବ ? ମୋ ନିଜ ଦୋଷରୁ ମୁଁ ଭୋଗୁଛି, କାହାକୁ କହିବି । ତୋ ଭଳି ନିଜ ଗୋଡ଼ରେ ଆଜି ପର୍ଯ୍ୟନ୍ତ ଠିଆ ହୋଇପାରିଲିନି, ଏଇୟା ତ ମୋ ଦୋଷ ।" ଟୁକୁ କହିଲା ।

"ଓହୋ, ଏଇ କଥା ! ବୁଝିଲୁ ଏବେ ନିଜ ଗୋଡ଼ରେ ଠିଆ ହେବାକୁ କହିବେ, ଆଉ ଥରେ ଠିଆ ହୋଇଗଲା ପରେ ପୁଣି ଗୋଡ଼କୁ ଧରି ହଲେଇବେ । ତା ମାନେ ତୁ ଯେମିତି ସ୍ଥିର ହୋଇ ଠିଆ ନ ହୋଇପାରୁ ।" ସୁଧାଂଶୁର କଥା ଗୁଡ଼ାକ ଟୁକୁର ଏ କାନରେ ପଶି ସେ କାନରେ ବାହାରି ଗଲା । ଦୀର୍ଘଶ୍ୱାସଟିଏ ନେଇ କହିଲା, "ଛାଡ଼ ସେ କଥା, ଅନ୍ୟ କଥା କିଛି କହ ।"

ସୁଧାଂଶୁ କହିଲା, "ହଁ, ତୁ ଅନ୍ୟକଥା କହିବାରୁ ମନେ ପଡ଼ିଲା । ଆଚ୍ଛା ତୁ ଗଳ୍ପ ପ୍ରତିଯୋଗିତାକୁ ଲେଖା ପଠାଇଲୁ କି ନାହିଁ ?"

- ନା, ପଠାଇନି ।

- ଆରେ, ଆଉ କେବେ ପଠେଇବୁ ?





- ଆଉ ପଠାଇବନି ବୋଲି ଭାବୁଛି ।

- ହଉ ଭାଇ ତୁ ନ ପଠାଇଲେ ନାହିଁ, ତୋର ଗୋଟେ ଗଳ୍ପ ମୋତେ ଦେ, ମୁଁ ପଠାଇବି ।

- ତୋର ଯାହା ଇଚ୍ଛା କର । ଟୁକୁ କହିବା ବେଳକୁ ସେମାନେ ଗହମ କଳ ପାଖରେ ପହଞ୍ଚି ଯାଇଥିଲେ । ସୁଧାଂଶୁ ପରେ ଦେଖାହେବ କହି ଚାଲିଯାଇଥିଲା ।

ଆଜକୁ ଚାରିଦିନ ହେଲା ଟୁକୁର ଦେହରେ ଜ୍ୱର । ଖଇ ଫୁଟୁଛି । ଔଷଧ ଖାଉଛି, ହେଲେ କାମ ଦେଉନି । ଡାକ୍ତର କହିଲେ ମ୍ୟାଲେରିଆ ହୋଇଛି, ସମ୍ପୂର୍ଣ୍ଣ ଆରାମ ଦରକାର । ସାଲାଇନ୍ ଦିଆଚାଲିଛି । ବାରମ୍ବାର ବାନ୍ତି ହୋଇ ହୋଇ ସେ ଶୁଖିଗଲାଣି । ବାପାମାଆ ଦି ପ୍ରାଣୀ ତା'ର ଏ ଅବସ୍ଥା ଦେଖି ଶଙ୍କାଗ୍ରସ୍ତ ହୋଇପଡ଼ିଲେଣି । ସେମାନେ ବି କଣ କରିପାରିବେ ? ମାଆ ବେଳେ ବେଳେ ପାଖରେ ବସି ସାଲାଇନ୍ ଲାଗିଥିବା ହାତକୁ ଧରି ଆଉଁସି ଦେଉଛନ୍ତି । ଜ୍ୱର ମୁଣ୍ଡକୁ ଧରିଦେଲେ ସେ ବେଳେ ବେଳେ ଖୁବ୍ ଯୋରରେ ବାଉଳି ହୋଇ ହାତକୁ ଛାଟି ପକାଉଛି । ମୁଣ୍ଡରେ ପାଣିପଟି ଦିଆଯାଇଛି । ଡାକ୍ତର ଦିନରେ ଦି ଓଳି ଆସି ଦେଖିଯାଉଛନ୍ତି ।

ସକାଳ ପହରୁ ଆଖି ଖୋଲିନଥିଲା ଟୁକୁ । ମୁଣ୍ଡ ପୁଣି ଭାରି ଭାରି ଲାଗୁଥାଏ । ପ୍ରାୟ ଦିନ ଦୁଇଟା ବେଳକୁ ଆଖି ଖୋଲିବାକୁ ସାହାସ କରିପାରିଥିଲା । ଦେହଟା ହାଲକା ଲାଗୁଥିଲା, ଏତେ ତାତି ନଥିଲା । ତା ଆଖି ଖୋଲିବା ଦେଖି ମାଆ ପଚାରିଲେ, "କଣ ଖାଇବୁ ? ଶାଗୁ ଟିକେ ଦେବି ?"

ଦୁଇଦିନ ହେଲା କିଛି ଖାଇନି ସେ । ନିଦ ବାଉଳାରେ ସାଲାଇନ୍ ଯାହା ଦିଆଯାଇଛି । ସାନଭଉଣୀକୁ ମାଆ କହିଲେ ଶାଗୁ ଆଣିଦେବାକୁ । ମାଆ ତା'ର ପାଟିରେ ଆସ୍ତେ ଆସ୍ତେ କରି ଶାଗୁ ଦେଉଛନ୍ତି । ଗଳାରୁ ସତେ ଯେମିତି କିଛି ଗଳୁନଥାଏ । ବାପା ପାଖରେ ବସିଥାଆନ୍ତି, ପିଠିକୁ ଆଉଁସି ଦେଉଛନ୍ତି । ଠିକ୍ ଏତିକି ବେଳେ ସୁଧାଂଶୁ ପଶିଆସିଲା ଘରକୁ । କିନ୍ତୁ ଟୁକୁର ଏ ଦୟନୀୟ ଅବସ୍ଥା ଦେଖି ପଚାରିଲା, "ମଉସା କଣ ହେଲା ଟୁକୁର ?"

- ମ୍ୟାଲେରିଆ ବାହାରିଛି ବୋଲି ଡାକ୍ତର କହିଲେ ।

ସୁଧାଂଶୁ ଟୁକୁ ପାଖରେ ବସିପଡ଼ିଲା, ତା ମୁଣ୍ଡକୁ ଛୁଇଁ ଦେହର ତାପ ମାପିଦେଇ ପଚାରିଲା, "ଭଲ ଲାଗୁଛି ?"

ମୁଣ୍ଡ ହଲେଇ ଟୁକୁ ସମ୍ମତି ଦେଲା । ହେଲେ ଏତିକିବେଳେ ଶାଗୁ ଖିଆ ସରି ଆସୁଥିବା ବେଳେ ଅସମ୍ଭାଳ ଭାବରେ ଟୁକୁ ବାନ୍ତି କରି ପକାଇଲା । ତା ପିଠିକୁ ଯୋରରେ ଆଉଁସି ଦେଉ





ଦେଉ ବାପା କହିଲେ, "ମୁଁ ତୁମକୁ କହୁଛି, ଦେହ ଭଲ ନାହିଁ, ଅଳ୍ପ ଅଳ୍ପ ଦିଅ ।" ମା ତା ଦେହ ଓ ଶେଯରେ ପଡ଼ିଥିବା ବାନ୍ତି ସବୁ ସଫା କରିବାକୁ ଯାଉ ଯାଉ କହିଲେ, "କଣ କରିବ । ପିଲାଟା ମୋର ଶୁଖିଗଲାଣି । ଦି ଢୋକ ଖାଇଦେଲେ ବଳ ଆସିବ ବୋଲି ଦେଇଦେଲି ।"

ଏହି ସମୟରେ ସାନ ଭଉଣୀ ଘର ବାହାରୁ ଆସିଲା । ହାତରେ ଏକ ସୁନ୍ଦର ଲଫାଫା ଥିଲା । ବାପାଙ୍କୁ ବଢ଼େଇଦେଇ କହିଲା, "ପୋଷ୍ଟ ପିଉନ୍ ଏବେ ଦେଇକି ଗଲା ।" ବାପାଙ୍କ ହାତରୁ ଚିଠିଟି ନେଇ ସୁଧାଂଶୁ ଖୋଲି ପଢ଼ିଲା ପରେ ଉଚ୍ଛୁଳି ଉଠିକହିଲା, "ମଉସା, ଆମ ଟୁକୁକୁ ପୁରସ୍କାର ମିଳିବ । ଟୁକୁ ତୁ ଜିତି ଯାଇଛୁ ରେ । ବାଃ କେତେ ବଢ଼ିଆ ହେଲା । କଂଗ୍ରାଚୁଲେସନ" । ଶୁଖିଲା ମୁହଁରେ ଟୁକୁ ହସିଦେଇଥିଲା । ବାପା କିଛି ବୁଝିପାରୁନଥିଲେ ।

ସୁଧାଂଶୁ ବାପାଙ୍କ ସନ୍ଦେହକୁ ଠିକ୍ ଠଉରେଇନେଇ କହିଲା, "ଆମ ଟୁକୁ ରାଜ୍ୟସ୍ତରୀୟ ଗଳ୍ପ ପ୍ରତିଯୋଗୀତାରେ ପ୍ରଥମ ହେଇଛି । ପୁରା ରାଜ୍ୟରେ ପ୍ରଥମ । ମୁଁ କହୁଥିଲି ଦିନେ ନା ଦିନେ ଆମ ଟୁକୁ ନିଶ୍ଚୟ ଜିତିବ ।"

ଏହି ଦୁଃଖ ସମୟରେ ମଧ୍ୟ ବାପାଙ୍କ ମୁହଁ ଉଜ୍ଜ୍ୱଳ ହୋଇଗଲା । ମେଘ ଆଢୁଆଳରେ ସୂର୍ଯ୍ୟ ଉଇଁଲା ପରି, ଦୁଃଖୀ ମୁହଁରେ ଚେନାଏ ହସ ଦେଖାଗଲା । ଟୁକୁର ମୁଣ୍ଡକୁ ଆଉଁସି ଦେଉ ଦେଉ କହିଲେ, "ଭଗବାନ ତୋର ମଙ୍ଗଳ କରନ୍ତୁ ।"

ସୁଧାଂଶୁ କହିଲା, "ଆସନ୍ତା ଶନିବାର, ପହରଦିନ ସନ୍ଧ୍ୟାରେ ଭୁବନେଶ୍ୱରରେ ସାଧାରଣ ସଭାରେ ଏହି ପୁରସ୍କାର ଦିଆଯିବ । ରାଜ୍ୟପାଳ ଆଉ ମୁଖ୍ୟମନ୍ତ୍ରୀ ପୁରସ୍କାର ଦେବେ । ଟୁକୁର ତ ଦେହ ଭଲ ନାହିଁ, କହିବେ ଯଦି ମୁଁ ଯାଇ ତା ପାଇଁ ପୁରସ୍କାର ନେଇ ଆସିବି ।"

ସୁଧାଂଶୁର କଥା ନ ସରୁଣୁ ବାପା କହି ପକାଇଲେ, "ନା ନା, ମୋ ପୁଅର ପୁରସ୍କାର ଆଣିବାପାଇଁ ମୁଁ ଯିବି । ତୁ ନୂଆ ନୂଆ ଚାକିରୀ କରୁଛୁ, କାହିଁକି କଷ୍ଟ କରିବୁ ? ମୁଁ ଯିବି, ନିଶ୍ଚୟ ଯିବି । ମୁଁ ପୁରସ୍କାର ଆଣିବି ।"

ଲାଗୁଥିଲା ବାପା ସତେ ଯେମିତି ହଜିଯାଉଥିଲେ ଆଉ ଏକ ଦୁନିଆରେ । ବାପାଙ୍କ ମୁହଁରେ ସଦ୍ୟ ପ୍ରସ୍ଫୁଟିତ ଉଜ୍ଜ୍ୱଳତା ଦେଖି ଟୁକୁ ମନେ ମନେ ଭାବୁଥିଲା ସତେ ଯେମିତି ତା ଜୀବନର ଏ ଜନ୍ମର ସାଧନା ସଫଳ ହୋଇଛି, ତାର ସବୁ ଦୁଃଖ ଦୂରେଇ ଯାଇଛି । ବାପା ତା'ପାଇଁ ଗର୍ବ ଅନୁଭବ କରୁଛନ୍ତି ଏହାଠୁ ବଳି ଆଉ କଣ ବା ସେ ଚାହିଁଥିଲା କେବେ । ଆଖିରୁ ଲୁହର ଧାର ବହିଯାଇଛି ।



# ଅନୁଭୂତ ଏକ ନିର୍ଦ୍ଦୟ ରାତ୍ରୀର



ମୁନ୍ନା ମହାପାତ୍ର

ମାତ୍ର ତୃତୀୟ ଶ୍ରେଣୀର ଛୁଆଟେ ମୁଁ ସେ ସମୟରେ । ବୟସ ଆଠରୁ ନ' ଭିତରେ ହିଁ ରହିବ । ୟା' ପୂର୍ବର ଅନୁଭୂତ, ଯେବେ ନଈରେ ପାଣି ବଢ଼େ, ସାହି ଦ'କଡ଼ ନାଳରେ କଳାପାଣି ବଦଳରେ ଓଲଟା ସାମାନ୍ୟ ସୁଅ ଛୁଟେ ନଈ ପାଣିର, କାରଣ ସେ ସମୟରେ ନଈ ହୁଡ଼ ନଥିଲା । ଆମ କୁନି ଛୁଆଙ୍କ ପାଇଁ ଏ'ଥିଲା କାଗଜ ଡଙ୍ଗା ଭସାଇବାର ଖେଳ ।

ନଈକୂଳିଆ ଗାଁ, ପ୍ରତି ଘରକୁ ତିନି ଚାରି ପାହାଚ ଚଢ଼ି ଯିବାକୁ ହୋଇଥାଏ । ଗାଁ' ଦାଣ୍ଡରେ ଖଟିଆ ପାରି ନିର୍ଭୟରେ ବସିଥାନ୍ତି ଲୋକ, ସେମାନଙ୍କ ପାଦକୁ ପାଣି ଛୁଇଁ ଥାଏ । ଆମ ଘର ମୋର ଯାହା ମନେ ଅଛି, ଗୋଟିଏ କିମ୍ବା ଦେଢ଼ ପାହାଚ ପର୍ଯ୍ୟନ୍ତ ପାଣି ଆସେ, ନିର୍ଭୟରେ ଶୋଇଯାଉ । ସକାଳେ ଦେଖିବା ବେଳକୁ ପାଣି ଗାଁ ମୁଣ୍ଡର ତ୍ରିନାଥ ମନ୍ଦିର ପଛ ପର୍ଯ୍ୟନ୍ତ ଟାଣି ହୋଇ ଚାଲି ଯାଇଥାଏ । ଏସବୁ ଆମର ପ୍ରତି ବର୍ଷର ଅଭ୍ୟାସ ପାଲଟି ଯାଇଛି ।

ଏବେ ତ ନଦୀରେ ପଥର ବନ୍ଧ ହୋଇସାରିଛି । ଗାଁ'ଟି ଏବେ ବନ୍ୟାଦାଉରୁ ମୁକ୍ତ ।

ଦିପହର ତିନଟା ସମୟରୁ ପୂର୍ବଭଳି ପାଣି ଆସିଲା । ନାଳ ଭରି ହୋଇ ସୂର୍ଯ୍ୟାସ୍ତ ସମୟକୁ ଦେଢ଼ କ'ଣ ତିନି ପାହାଚ ଟପିଲାଣି ପାଣି । ସନ୍ଧ୍ୟା ୭ଟାରେ ଆଉ ପାହାଚ ଗୁଡ଼ିକ ଦିଶୁନାହିଁ । ବୁଢ଼ୀମା ଯୋଉ ପିଣ୍ଡାରେ ବସି ଦାନ୍ତ ଘସେ, ସାମାନ୍ୟ ଦେଖାଯାଉଛି ପିଣ୍ଡାଟି । ସାହି ରାସ୍ତାରେ ଆଲୁଅ, ଘରେ ମଧ୍ୟ ବିଜୁଳିବତୀ ଜଳୁଛି । ଏ ସମୟରେ ମୋ ମଉସାଙ୍କ କଚ୍ଚା ଘର ମାଟି ଖୋଳସା କାନ୍ଥ ଭାରସାମ୍ୟ ହରାଇ ଅଧା ଢଳିବା ଅବସ୍ଥାରେ ରହିଛି । ରାତି ସାଢ଼େ ଆଠ ହେବ । ଦୁଲ୍ କରି ଶବ୍ଦରେ ଭୁଷୁଡ଼ି ପଡ଼ିଲା ଘରଟା । ଖାଲି ଚାଳ ଛପର ଛାତ ମଧ୍ୟ ଦେଇ କିଛି ଧୂଳି ବାହାରିବା ଦେଖାଗଲା । ତାପରେ ଛାତଟି ମଧ୍ୟ ପାଣି ଭିତରେ ବୁଡ଼ିଗଲା ।





ଏତେ ପାଣି ଆସିବ, ନା ଜନତା, ନା ସରକାର ଆଶା ରଖିଥିଲେ । କୌଣସି ଉଦ୍ଧାରକାରୀ ଦଳ ମଧ୍ୟ ଆସି ପହଞ୍ଚିପାରି ନାହିଁ । ସବୁକିଛି ହଠାତ୍ ଘଟିଗଲା ।

ଆମେ ବାଧ୍ୟ ହୋଇ ଅଧାଘଣ୍ଟା ଭିତରେ ଗୋଟିଏ ଛାତ ଘରେ ଆଶ୍ରୟ ନେଲୁ । ଏପଟେ ବିଦ୍ୟୁତ୍ ବିଚ୍ଛିନ୍ନ, ଅନ୍ଧାର । ଘଣ୍ଟାଏ ଯାଇଛି କି ନାହିଁ, ଆମ ଅଜାଙ୍କ ପୁରୁଣା ଘର ହେବ ୧୦୦ ବର୍ଷ ତଳର ଖପର ଘରଟେ, ଯୋର୍ ଶବ୍ଦର ସହ ଦାଣ୍ଡରୁ ବାରି ପର୍ଯ୍ୟନ୍ତ ଏକାଥରକେ ଭୁଷୁଡ଼ି ପଡ଼ିଲା । ସାମାନ୍ୟ ଟର୍ଚ୍ଚ ଆଲୁଅରେ ଯାହା ଦେଖାଗଲା ଘରର ଅବସ୍ଥା ଅଜା ବୋଧେ ସନ୍ନିପାତରେ ଆକ୍ରାନ୍ତ ହେଲେ, ୨/୪ ଦିନ ପର୍ଯ୍ୟନ୍ତ ମାନସିକ ଭାରସାମ୍ୟ ହରାଇବସିଲେ, ବଙ୍କୁଲି ବାଡ଼ିଟିକୁ ଆଖି କହି ଗ୍ରେବାଉଥିଲେ ଇତ୍ୟାଦି ।

ନୂଆ ଛାତ ଘରଟେ ଉପରେ ଆଶ୍ରୟ ନେଇଥିଲୁ ୪ଗୋଟି ପରିବାର । ନଈସୂଅ ସାହି ମଧ୍ୟ ଦେଇ ଗ୍ଲିଛି ଗର୍ଜନର ସହ, ସାମ୍ନା ପାଖ ଘର ବା ଅନ୍ୟ କୌଣସି ଛାତରେ ଲୋକ କେମିତି ଅଛନ୍ତି ? ଡାକ ଛାଡ଼ିଲେ ବି କିଛି ଶୁଣାଯାଉନାହିଁ ।

ଘରଟି ଟିକିଏ ଉଚା ବୋଲି କେତେ ଲୋକ ନିଜ ଘରେ ହିଁ ଆଶ୍ରୟ ନେଇଥିଲେ । ରାତି ହେବ ବୋଧେ ୧୧ଟା, ରାମକୃଷ୍ଣ ମାମୁଁ ଓ ତାଙ୍କ ମାଁ ନିଜ ଖପର ଘରର ଛାତ ଚଢ଼ି ପାଖ ଛାତ ଘରକୁ ଯିବା ଦେଖିଲି । ଆମେ ଯେଉଁ ଛାତ ଘରେ ଆଶ୍ରୟ ନେଇଛୁ, ମାତ୍ର ୩ଟି ପାହାଚ ବାକିରହିଛି, ପାଣି ଆମ ପାଦ ଛୁଇଁବାକୁ ।

ଜଣେ କକାଙ୍କୁ ଚିନ୍ତା ହେଲା ତାଙ୍କ ୩ ପୁତୁରା, ଝିଆରୀ ଘରେ ଥିଲେ । କ'ଣ ହୋଇଥିବ କେଜାଣି । ନିଜ ପହିଲ୍‌ମାନ୍ ଚେହେରା ଉପରେ ବିଶ୍ୱାସ ରଖି ବାହାରିଲେ ଛାତରେ ଛାତରେ ୮/୧୦ ଘର ପାରି ହୋଇ ସେମାନଙ୍କୁ ଉଦ୍ଧାର କରି ଆଣିବେ । ଖୁଡ଼ୀ ଓ ଆମ ସମସ୍ତଙ୍କ ବାରଣ ପରେ ମନକଥା ମନରେ ମାରି ସେ ବାଧ୍ୟ ହୋଇ ଚୁପ୍ ରହିଲେ । କାରଣ ବାଟରେ ୨/୩ ଟି ଘର ଭୁଷୁଡ଼ି ପଡ଼ିଛି । ସୁଅ ଛୁଟିଛି ସାହି ମଝିରେ ।

ଆମ ଭାଗ୍ୟକୁ ଆଉ ପାଣି ବଢ଼ିନି । କିନ୍ତୁ କମିନି ମଧ୍ୟ, ସେମିତି ବହୁତ ସମୟ ଠିଆ ହୋଇରହିଲା ପାଣି ଆଉ କିଛି ଘର ସମୂଳେ ଭୁଷୁଡ଼ାଇବା ପାଇଁ । ଆମେ ରହିଥିବା ଘରଟେ ନୂଆ ବୋଲି ସମସ୍ତଙ୍କ ମନରେ ଦମ୍ଭ ।

ସାହିରେ ଜଣେ ଅଜା, ଆଈ, ମାଉସୀ, ୨ଜଣ ମାମୁଁ ନିଜଘରେ ଆଶ୍ରୟ ନେଇଛନ୍ତି ଛାତ ଉପରେ । ମାମୁଁ ଦିଜଣ ଟୋକାଳିଆ ଲୋକ । ଏ ଛାତରୁ ସେ ଛାତ ପାରି ହେଉଥାନ୍ତି । ପାଖ ଘର





ଛାତକୁ ଯାଇଛନ୍ତି କି ନାହିଁ, ଅଜା, ଆଇ, ମାଉସୀ ଥିବା ଛାତ ଘରଟି ଦୁଲ୍ କିନା ଶବ୍ଦର ସହ ଭୂମିରେ ପଡ଼ିଲା । ରାତି ଅନ୍ଧାରରେ ସାମାନ୍ୟ ଶବ୍ଦ ଅନୁଭବ କଲୁ, ସକାଳେ ଜାଣିଲୁ ପୂରା ବିଷୟ ।

ତା ପରେ ଦେଖିଲୁ କଚ୍ଚା ଘର ଛଣ ଛପର ଛାତଟେ ଭାସି ଯାଉଛି, ବସିଛନ୍ତି ତା' ଉପରେ ବାପ, ଝିଅ । ନଡ଼ା(ପାଳ) ଗଦାଟିଏ ଭାସି ଯାଉଛି, ତା ଉପରେ ଅଛନ୍ତି, ମାଲିକ କୁକୁର । ସାହିର ଛାତରୁ କେହିଜଣେ ଭଦ୍ର ଲୋକ ଖୋଲା ଯାଇଥିବା ଖଟର ଫିତା ବଡ଼ାଟେ ତାଙ୍କ ଉପରକୁ ଫିଙ୍ଗି ଦେଲେ । ବହୁ ଦୂର ଯିବା ପରେ ଗୋଟିଏ ଆମ୍ବ ଗଛ ଉପରକୁ ଖଟ ଫିତା ଫିଙ୍ଗି ଆମ୍ବ ଗଛରେ ଆଶ୍ରୟ ନେଲେ ସେମାନେ କିନ୍ତୁ ସକାଳ ପାହିଲା ବେଳକୁ ନାଲି ଜନ୍ଦା (ପିଂପୁଡ଼ି) ମାନଙ୍କ ଶିକାର ହୋଇଛନ୍ତି ।

ସାହି ପଛପଟେ ତିନି ପୁଅ ବୋହୂ ନିଜ ଘରେ ହିଁ ଆଶ୍ରୟ ନେଇଥିଲେ, କିନ୍ତୁ ପାଣି ବଢ଼ିବା ପରେ ପୁଅମାନେ କୌଣସି ମତେ ପାଖ ଘର ଛାତ ଚଢ଼ି ବୋହୂ ମାନଙ୍କୁ ସେମାନଙ୍କର ଲୁଗାକୁ ଦଉଡ଼ି କରି ଉଦ୍ଧାର କରିଥିଲେ ।

କେହି ଜଣେ ଦି'ଜଣ ବୁଢ଼ା ବୁଢ଼ୀ କହନ୍ତି, ୭ଟି ଦୀପ ଭାସି ଯାଉଥିଲା ଆମେ ଦେଖିଛୁ, କିନ୍ତୁ ମୋର ସେମିତି କିଛି ମନେ ହେଉନି ।

ରାତି କେତେ ହେବ କହିପାରୁନି, ଲୋକ ଆମ ଆଞ୍ଚଳିକ ଭାଷାରେ କହିଲେ "ପାଣି ଛାଡୁଛି" । ଧିରେ ଧିରେ ନଈ ସୁଅ, ଗର୍ଜ୍ଜନ, କମିବାରେ ଲାଗିଲା, ସକାଳ ପାହିଲା ବେଳକୁ ମଣିଷେ ପାଣି ସାହିରେ ଠିଆ, କିଛି ବାକିଥିବା ଘର କାନ୍ଥ ବତୁରଇବା ପାଇଁ, କିନ୍ତୁ ସୁଅ ନାହିଁ ।

ଯ୍ୱା ଭିତରେ ଗାଈ ଦୁଇଟି ପହଁରି ଆସି ସାହି କୂଅରେ ପଶିଗଲେ, କିନ୍ତୁ ନିଜେ ବାହାରି ଚାଲିଯାଇଥିଲେ ।

. ଏ ସମୟରେ ଆସିଲେ କକାଙ୍କ ୩ ପୁତୁରା ଝିଆରୀ, ହାତ ପୂରା ନାଲି ପଡ଼ିଯାଇଛି । ଘର ଅଗଣାରେ ଚୋରର ଭୟରେ ଲୁହାଛଡ଼ର ଜାଲି ଲଗାଯାଇଥାଏ । ପାଣି ବଢ଼ିଲା ପରେ ଖପର ଛାତ ଉପରକୁ ଚଢ଼ିବାରେ ପ୍ରତିବନ୍ଧକ ଥିଲା ଜାଲି, ସେଥିରେ ଝୁଲି ପୁରା ରାତି କଟିଥିଲା ୩ ନାରୀଙ୍କର ।

ଦିନ ୯ଟାରେ କିଛି ରିଲିଫ୍ ପହଞ୍ଚିଲା ସରକାରଙ୍କ ତରଫରୁ । ସରକାରୀ ଅଫିସରଙ୍କ ପାଖରୁ ଶୁଣିଲୁ ନଈ ତଳ ଭାଗରେ ଥିବା କୌଣସି ବ୍ୟାରେଜ୍ ଅଚଳ ଥିବାରୁ ଆମ ଗାଁର ଏଇ ଅବସ୍ଥା ।





ବର୍ତ୍ତମାନ୍ ପାଣି ଆଉ ନାହିଁ । କନ୍ତୁ ସାହରେ ପ୍ରତଘରେ ଆଣ୍ଠୁଏ ପଙ୍କ, କୂଅ ପୁର୍ ପଙ୍କରେ ଭର୍ । କଛ ଦନ ପିଇବା ପାଣି ପାଇଁ ବହୁତ ଦୂର ଯିବାକୁ ହେଲ୍ ।

ଆମ ସାହରେ ପକ୍କା ଘର ସଂଖ୍ୟା ବେଶୀ । ଅନ୍ୟ ସାହ ଦୃଶ୍ୟ କଛ ହୃଦୟ ବଦାରକ ଥିଲ୍ । କଚ୍ଚା ଘର ସବୁ ମାଟିରେ ମିଶିଛ, ଶାଢ଼ୀକୁ ତମ୍ବୁ କର ଲୋକ ଆଶ୍ରୟ ନେଇଛନ୍ତ । କଛ ଦୂରରେ ପଥର ୩ଟିକୁ ଚୁଲ କର ବସିଛ ରଲଫ୍ ଗ୍ରଉଲରେ ଭାତ । ରାସ୍ତା ଘାଟ ପଙ୍କରେ ଭର୍, ବଜୁଳ ଖୁଣ୍ଟ ସବୁ ନଇଁ ପଡ଼ିଛ ।

ଗାଁର ପୂର୍ବ ଅବସ୍ଥା ଫେରବାକୁ ଲ୍ଗିଥିଲ୍ ବହୁତ ବର୍ଷ । ଏଥିଲ୍ ୧୯୮୦ ବନ୍ୟା ଗୁଣପୁର । ଯାହା ଆମେ ଅଙ୍ଗେ ନଭାଇଥିଲୁ ।

ଗୁଣପୁର, ରାୟଗଡ଼





# ପୁଅପାଇଁ ଗୀଟାର



ଦୀପକ ଷଡ଼ଙ୍ଗୀ

୨୦୦୯ ମସିହା ଅକ୍ଟୋବର ମାସ । କଟକରେ ଦଶହରା ସମୟ । ମା'ଙ୍କ ଆଗମନରେ ସାରା ସହର ଉତ୍ସବ ମୁଖର । ସବୁଠି ଆଲୋକର ସଦୃଶ ରୋଷଣୀ । ସେଦିନ ମହାଷ୍ଟମୀ ଥାଏ । ବଡ଼ାନାସୀରୁ ଗୋଟିଏ କାର୍ଯ୍ୟକ୍ରମ ସାରି ମୁଁ ମୋ ମୋଟର ସାଇକେଲରେ ଘରକୁ ଫେରୁଥାଏ । ସେତେବେଳକୁ ସମୟ ସାଢ଼େ ଏଗାରଟା ହେଲାଣି । କାନ୍ଧରେ ମୋ ଗୀଟାର ପଡ଼ିଥାଏ । ପ୍ରଶାସନର କଡ଼ା ନିୟମ, ରାତ ଦଶଟା ପରେ ସବୁ ମେଲୋଡ଼ି କାର୍ଯ୍ୟକ୍ରମ ବନ୍ଦ । କାଠଯୋଡ଼ି ଶଂବନ୍ଧ ଦେଇ ଆସୁଥାଏ ମୁଁ । ସନ୍ଧ୍ୟାବେଳେ ଟିକେ ବର୍ଷା ହୋଇଥିଲା, ଥଣ୍ଡା ପବନଟା ଦେହକୁ ଶୀତୁଆ ଲାଗୁଥାଏ । ରାସ୍ତାରେ ଲୋକ ଟିକେ କମି ଆସିଲେଣି । ମୁଁ ପ୍ରାୟ ବିଶ୍ୱନାଥ ପାଠାଗାର ପାଖାପାଖି ହୋଇଗଲାଣି । ହଠାତ୍ ମୋ ଗାଡ଼ିର ଷ୍ଟାର୍ଟ ବନ୍ଦ ହୋଇଗଲା । ଭାବିଲି, ବୋଧହୁଏ ଗାଡ଼ି ରିଜର୍ଭରେ ପଡ଼ିଯାଇଥିବ । ପୁଣି ମନେ ପଡ଼ିଲା ସକାଳେ ହିଁ ଦୁଇ ଲିଟର ପେଟ୍ରୋଲ୍ ପକାଇଛି । ହୁଏତ ବର୍ଷାପାଣି ଗାଡ଼ିର ଇଞ୍ଜିନରେ ପଶିଯାଇଥିବ । ଗାଡ଼ିକୁ ରାସ୍ତା କଡ଼ରେ ରଖି ଦେଖିଲି, ସବୁକିଛି ଠିକ୍ ଠାକ୍ ଲାଗୁଥିଲା । ସେଲ୍ଫ ଷ୍ଟାର୍ଟ ଦେଲି ହେଲାନି, ଗ୍ରେକ୍ ଦେଇ ଚେଷ୍ଟା କଲି, ତଥାପି ହେଲାନି । ଅନ୍ଧାର ରାତିରେ ହଠାତ୍ ଏମିତି ଅଧାରାସ୍ତାରେ ଗାଡ଼ି ଅଟକି ଗଲେ ଯେମିତି ଅନୁଭବ ହୁଏ ତାହା ଅନେକେ ବୁଝିପାରିବେନି । ସେ ଯାହେଉ ଗୀଟାରକୁ କାନ୍ଧରୁ ଓହ୍ଲେଇଦେଇ କିକ୍ ଉପରେ କିକ୍ ମାରିବାକୁ ଲାଗିଲି । କିନ୍ତୁ କିଛି ସୁଫଳ ମିଳିଲା ନାହିଁ । ଗାଡ଼ି ଯେଉଁଦିନରୁ କିଣା ହୋଇଥିଲା ସେଇ ଦିନରୁ ସେ କେବେ ବି ଗୋଟିଏରୁ ଦୁଇଟି କିକ୍ ପର୍ଯ୍ୟନ୍ତ ଯାଇନଥିଲା । ହେଲେ ଆଜି ମନେ ହେଉଥିଲା ସତେ ଯେମିତି ଏଇ ଗାଡ଼ି ମୋ ଉପରେ ଦାଉ ସାଧିବାପାଇଁ ମନ ବଳାଇଥିଲା । ଆଖପାଖରେ ସବୁ ଦୋକାନ ବନ୍ଦ ହୋଇଗଲାଣି । ଅଧଘଣ୍ଟା ଗାଡ଼ିକୁ ଷ୍ଟାର୍ଟ କରିବା ପ୍ରଚେଷ୍ଟାରେ କେମିତି ବିତିଗଲା, ହାତଘଣ୍ଟାରେ ବାରଟା ବାଜିବା ଦେଖି ଅଧିକ ବିରକ୍ତ





ଲାଗିଲାଣି । ଟିକେ ହତୋତ୍ସାହିତ ହୋଇପଡ଼ିଲି । ଚାରିପଟକୁ ନଜର ପକାଇ ଦେଖେ ତ, ମୁଁ କାଳୀ ମନ୍ଦିର ମଶାଣି ପାଖରେ ଛିଡ଼ା ହୋଇଛି । ରାସ୍ତାର ବାମପଟେ ମଶାଣି ଆଉ ଡାହାଣ ପାଖେ କାଳୀ ମନ୍ଦିର । ମୋ ଦେହରୁ ପରସ୍ତେ ଝାଳ ବାହାରିଗଲା । ଦେହକୁ ଶୀତୁଆ ଲାଗୁଥିବା ପବନଟା ମୋତେ ବୈଶାଖ ମାସର ଝାଞ୍ଜିପବନ 'ଲୁ' ପରି ଲାଗିଲା । ମନ୍ଦିରର ପହଡ଼ ପଡ଼ିଛି । ରାସ୍ତାରେ ଆଉ କେହି ଦିଶୁନାହାନ୍ତି । ଯାହା କେବଳ କିଛି ଦୂରରେ ଖାନ୍ ନଗର ପୂଜା ମଣ୍ଡପର ଲାଇଟ୍ ଗୁଡ଼ାକ ଧପ୍ ଧପ୍ ହେଉଥାନ୍ତି । କଣ ଆଉ କରାଯିବ, କିଛି ବୁଦ୍ଧିବାଟ ଦିଶୁନଥିଲା ।

ମା କାଳୀଙ୍କୁ ମନେ ମନେ ସ୍ମରଣ କଲି । ମଶାଣିରୁ ଭାସି ଆସୁଥିବା ମଣିଷ ପୋଡ଼ା ଘିଅର ବାସ୍ନା ମୋ ଅବସ୍ଥାକୁ ଆହୁରି ଖରାପ କରିଦେଉଥାଏ । ହଠାତ୍ ଦେଖିଲି ପାଠାଗାର ଆଡୁ ଜଣେ କିଏ ଚାଲି ଚାଲି ଆସୁଛି । କାଳୀ ମନ୍ଦିର ପଟ ରାସ୍ତାଟା ଟିକେ ଅନ୍ଧାରିଆ ଥିବାରୁ ଠିକ୍ ସେ ବୁଝାପଡୁନଥାଏ, ଏତେ ରାତିରେ ମଶାଣି ପାଖରେ ତାକୁ ଦେଖି ମୋ ପିଳେହି ପାଣି । ମୁଣ୍ଡ ପୋତିକି ସେ ଆଡ଼କୁ ଧ୍ୟାନ ନ ଦେଇ ଗୀଟାରଟାକୁ କାନ୍ଧରେ ପକେଇ ଦେଇ ଗାଡ଼ି ଉପରେ ବସି କିକ୍ ଉପରେ କିକ୍ ମାରିଚାଲିଲି ।

ସେ ଲୋକଟା ଯେ କେତେବେଳେ ଆସି ମୋ ପାଖରେ ଛିଡ଼ା ହୋଇଗଲାଣି ମୁଁ ଜାଣିଛି, ଶୁଣିଲି ଗୋଟେ ସ୍ୱର - "ଭାଇ କଣ ହେଲା କି ?" ଚମକି ପଡ଼ିଲି । ମୁଣ୍ଡ ଉଠେଇ ଦେଖିଲି ମୋ ସାମନାରେ ଜଣେ ଧଳା ସାର୍ଟ ଆଉ ନୀଳ ଜିନ୍ସ୍ ପିନ୍ଧା ବ୍ୟକ୍ତି । ବ୍ୟକ୍ତି ଜଣକ ଭଦ୍ର ଓ ମାର୍ଜିତ ଜଣାପଡୁଥାନ୍ତି, ଦେଖିବାକୁ ଗୋରା ଓ ନାକତଳେ ସରୁ ନିଶ । ବୟସ ପାଖାପାଖି ଚାଳିଶି ହେବ । ମୁଁ କହିଲି, "ଗାଡ଼ିଟା ଅଚାନକ୍ ବନ୍ଦ ହୋଇଗଲା । ଅନେକ ଚେଷ୍ଟା କଲିଣି କିଛି ହେଉନି ।" ମୋ କାନ୍ଧରେ ପଡ଼ିଥିବା ଗୀଟାର ଦେଖି ଭଦ୍ରବ୍ୟକ୍ତି ପଚାରିଲେ, "ଆପଣ କଣ ଗୀଟାର ବଜାନ୍ତି ?" ମୁଁ କହିଲି, "ହଁ, ଆଜି ବଡ଼ାନାସୀରେ ଆମର ଗୋଟେ କାର୍ଯ୍ୟକ୍ରମ ଥିଲା ତ ଯାଇଥିଲି, ଦେଖନ୍ତୁ ଫେରୁ ଫେରୁ କି ଅବସ୍ଥାରେ ପଡ଼ିଛି ।"

ଭଦ୍ରବ୍ୟକ୍ତି ଜଣକ ଉତ୍ସାହିତ ହୋଇ ପ୍ରଶ୍ନକଲେ, "ଆପଣ ଗୀଟାର ବଜାଇବା ଶିଖାନ୍ତି ?" ମୁଣ୍ଡ ହଲେଇ ହଁ ବୋଲି ଜଣାଇଦେଲି । ଭଦ୍ରବ୍ୟକ୍ତିଙ୍କ ଆଖିରେ ଗୋଟେ ସନ୍ତୋଷ ପରିଲକ୍ଷିତ ହେବାପରି ଜଣାପଡ଼ିଲା । ସେ କହିଲେ, "ଭାଇ ଗୋଟେ ଅନୁରୋଧ କରିବି ରଖିବେ ?" ମୁଁ ତାଙ୍କୁ ଟିକେ ଆଶଙ୍କାପୂର୍ଣ୍ଣ ଚାହାଣୀରେ ଚାହିଁଲି । ସେ ମୋତେ ସହଜ କରିବାକୁ ଯାଇ କହିଲେ, "ମୁଁ ଆପଣଙ୍କ ଗାଡ଼ି ଷ୍ଟାର୍ଟ କରିଦେବି; କିନ୍ତୁ ଆପଣଙ୍କୁ ମୋର ଗୋଟେ ଛୋଟ୍ ଅନୁରୋଧ ରକ୍ଷା କରିବାକୁ ପଡ଼ିବ ।" ମୁଁ ବ୍ୟସ୍ତ ଆଉ ବିରକ୍ତ ହୋଇ କହିଲି, "ଆପଣ କଣ ମେକାନିକ୍, ଯେ ଗାଡ଼ି





ଷ୍ଟାର୍ଟ୍ କରଦେବେ ?” ଭଦ୍ରବ୍ୟକ୍ତି ଜଣକ ସାମାନ୍ୟ ହସିଦେଇ କହଲେ, “ନା ମେକାନକ୍ ତ ନୁହଁ, କନ୍ତୁ ହଁ ଆପଣଙ୍କ ଗାଡ଼ି ଠିକ୍ କରଦେବ ନଶ୍ଚୟ ।”

ମୁଁ ବ୍ୟସ୍ତ ହେଉଥିଲ, ତେଣୁ କହଲ, “କଣ କହବା କଥା ଜଲଦ କୁହନ୍ତୁ ।” ଭଦ୍ରବ୍ୟକ୍ତି ଜଣକ ନଜ ସାର୍ଟ ପକେଟରୁ ତାଙ୍କ କାର୍ଡ଼ଟା ବାହାର କରଦେଲେ ଓ କହଲେ, “ଭାଇ ମୋର ବାରବର୍ଷର ପୁଅ ଗୋଟେ ଅଛ । ତା’ର ଗୀଟାର ଶିଖିବାକୁ ବହୁତ ଇଚ୍ଛା । ମୁଁ ଆଉ ମୋ ସ୍ତ୍ରୀ ଉଭୟେ କର୍ମବ୍ୟସ୍ତତା ଭତରେ ତା ଇଚ୍ଛାକୁ ସମ୍ମାନ ଦେଇ ପାରନୁ । ଆଉ କଟକରେ କଏ କେଉଁଠି ଗୀଟାର ଶିଖାଉଛ ସେ ବଷୟରେ ବ ଆମେ ଜାଣିନୁ । ତେଣୁ ଆପଣ ଯଦ ଟିକେ ଆଗ୍ରହ ଦଅନ୍ତେ ମୁଁ ପୁଅକୁ ଛାଡ଼ନ୍ତ ।” ସବୁ ଶୁଣିକ ନ ଶୁଣିପାରଲ ଭଳ କହଲ, “ହଉ ହଉ, ଠିକ୍ ଅଛ । ମୋ ସମୟ ହେଲେ ମୁଁ ଆପଣଙ୍କୁ ଫୋନ୍ କରବ, ଆପଣ ଆଗ ମୋ ଗାଡ଼ିଟା ଷ୍ଟାର୍ଟ୍ କରଦେଲେ ।”

ମୋ ପାଟିରୁ କଥା ସରିଛ କ ନାହିଁ, ଭଦ୍ରବ୍ୟକ୍ତି ଜଣକ ଗାଡ଼ିଉପରେ ବସି ଗୋଟାଏ କକ୍ ମାରଲେ ଯେ ଏକା ଥରକେ ଗାଡ଼ି ଷ୍ଟାର୍ଟ୍ ହୋଇଗଲ । ମୁଁ ଅବାକ୍ ହୋଇ ତାଙ୍କୁ ଚାହିଁଥାଏ । ଭଦ୍ରବ୍ୟକ୍ତି ଜଣକ ସାମାନ୍ୟ ହସିଦେଇ କହଲେ, “ହେଲ ତ ! ଆପଣଙ୍କ ଅସୁବଧା ଦୂର ହୋଇଗଲ । ବର୍ତ୍ତମାନ ଆପଣ କୁହନ୍ତୁ ନଶ୍ଚୟ ମୋ ନମ୍ବରରେ ଫୋନ୍ କର ଆସିବେ ।” ମୁଁ ମୁଣ୍ଡଟା ଟୁଙ୍ଗାର ଦେଇ ତାଙ୍କୁଟିକେ ଧନ୍ୟବାଦ ବ ଭଲ ଭାବରେ ନ କହ, ସେଇଠୁ ପଳାଇ ଆସିଲ । ଘରେ ପହଞ୍ଚୁ ପହଞ୍ଚୁ ରାତ ଦୁଇଟା । କାହାକୁ କଛ ନ କହ ଯାଇ ସିଧା ଖଟରେ ପଡ଼ିଗଲ ।

ଦଶହରା ଭସାଣି ସର ଗୋଟେ ସପ୍ତାହ ହେଲାଣି । ଦନେ ବୋଉ ମୋ ମଇଳା ପ୍ୟାଣ୍ଟ ସାର୍ଟ ସଫାକରବାକୁ ନେବାବେଳେ ପକେଟରୁ ଖସି ପଡ଼ିଥିଲା ସେଇ କାର୍ଡ଼ଟା । ବୋଉ ସେ କାର୍ଡଟା ଆଣି ମୋତେ ଧରେଇଦେଲା । ସେଇ କାର୍ଡ଼ଟା ଦେଖିବା ପରେ ମୋତେ ମହାଷ୍ଟମୀ ଦନ ଘଟିଥିବା ଘଟଣା ମନେ ପଡ଼ିଲା । ମୋତେ ଟିକେ ଖରାପ ଲାଗିଲା । ଯେଉଁ ବ୍ୟକ୍ତି ରାତ ଅଧରେ ମୋତେ ଅସୁବଧାରେ ସାହାଯ୍ୟ କରଥିଲା, ତା କଥା ରଖି ପାରନଥିଲ । କାର୍ଯ୍ୟବ୍ୟସ୍ତତା ଭତରେ ଭୁଲ ଯାଇଥିଲ । କାର୍ଡ଼ରେ ଲେଖାଥିଲା ପ୍ରକାଶ କୁମାର ମିଶ୍ର, ସିନୟର ମାର୍କେଟିଂ ମ୍ୟାନେଜର, ପରେ ପରେ ଘର ନମ୍ବର ଆଉ ମୋବାଇଲ୍ ନମ୍ବର । ଆଉ ସମୟ ନଷ୍ଟ ନ କର ମୁଁ ମୋବାଇଲ୍ ଲଗାଇଲ, ହେଲେ ସେପାଖରୁ ସୂଚନା ଆସିଲା ଏଇ ନମ୍ବର କାହାରକୁ ଦଆଯାଇନାହିଁ । ଘର ନମ୍ବରକୁ ଫୋନ କରବାପରେ ମହଳା ଜଣେ ଫୋନ ଧରଲେ । ମୁଁ କହଲ, “ଆଜ୍ଞା । ପ୍ରକାଶ



ବାବୁ ମୋତେ ଏଇ ନମ୍ବର ଦେଇଥିଲେ । ତାଙ୍କ ପୁଅ ଗିଟାର୍ ଶିଖିବ ବୋଲି କହୁଥିଲେ । ସେଇଥିପାଇଁ ଫୋନ୍ କରିଥିଲି ।” ସେପାଖରୁ କିଛି କୁହାଯାଉନଥିଲା । ମୁଁ ଦୁଇ ତିନିଥର ହାଲୋ ହାଲୋ ବୋଲି କହିବାପରେ ସେପାଖରୁ ମହିଳା ଜଣକ କହିଲେ ଆମ ଘର ଠିକଣା ଲେଖନ୍ତୁ, ମହାନଦୀ ବିହାର, ଚତୁର୍ଥ ଲେନ୍, ଘର ନଂ ସି/୨୧’ । ମୁଁ ଧନ୍ୟବାଦ ଦେବାପୂର୍ବରୁ ସେ ଫୋନ ବନ୍ଦ କରିସାରିଥିଲେ ।

ମୁଁ ସାଙ୍ଗେ ସାଙ୍ଗେ ଗାଡ଼ି ଧରି ବାହାରିଗଲି ସେଇ ଠିକଣା ଆଡ଼କୁ । ଅଧଘଣ୍ଟା ପରେ ପ୍ରକାଶ ନିଳୟ ସାମନାରେ ଠିଆ ହୋଇଥିଲି । ଦୁଇତଳ ବିଶିଷ୍ଟ ସୁରମ୍ୟ ଅଟ୍ଟାଳିକା । ମୁଖ୍ୟ ଫାଟକରେ ମାର୍ବଲରେ ଲେଖା ହୋଇଥାଏ ପ୍ରକାଶ ବାବୁଙ୍କ ନାଁ ଓ ଘର ଠିକଣା । ମୁଁ ଗେଟ୍ ଖୋଲି ଭିତରକୁ ଗଲି । ବାହାରେ ଥିବା କଲିଂ ବେଲ୍ ମାରି ଦେଇ ଅପେକ୍ଷା କରିଲି । କିଛି ସମୟପରେ ୩୫/୩୬ ବୟସ୍କା ମହିଳା ଜଣେ ଆସି କବାଟ ଖୋଲିଲେ । ମୁଁ ମୋର ସଂକ୍ଷିପ୍ତ ପରିଚୟ ଦେଲି । ମୋତେ ମହିଳା ଜଣକ ବୈଠକରେ ବସିବାପାଇଁ କହିଲେ । ସେ ଘର ଭିତରକୁ ଚାଲିଯାଇଥିଲେ । ସୁନ୍ଦର ଭାବରେ ସଜାଯାଇଥିବା ଘରର ସାଜସଜ୍ଜା ଦେଖୁ ଦେଖୁ କାନ୍ଥରେ ଫୁଲମାଳରେ ସଜ୍ଜା ଫୋଟୋ ଦେଖି ଟିକେ ପାଖରୁ ଦେଖିବାପାଇଁ ଗଲି । ଫଟୋକୁ ଦେଖି ମୋ ଦେହରୁ ଝାଳ ବାହାରିଗଲା । ସେଇ ରାତିରେ ଯେଉଁ ଭଦ୍ରବ୍ୟକ୍ତି ମୋ ଗାଡ଼ି ଷ୍ଟାର୍ଟ୍ କରିଥିଲେ ଏ ସେଇ ବ୍ୟକ୍ତିଥିଲେ । ଘର ଭିତରେ ଏସି ଲାଗିଥିଲେ ସୁଦ୍ଧା ମୋ ଦେହରେ ଝାଳ ଆସିଯାଇଥିଲା, କାରଣ ଫଟୋରେ ଲାଗିଥିବା ଫୁଲମାଳରୁ ଅନୁମାନ ହେଉଥିଲା ଏହା ଅନେକ ମାସ କିମ୍ବା ହୁଏତ ବର୍ଷ ପୁରୁଣା । କିନ୍ତୁ ମୁଁ ଏହି ବ୍ୟକ୍ତିଙ୍କୁ ଦେଖିଥିଲି ମାତ୍ର ଏଇ ପନ୍ଦର ଦିନ ତଳେ ।

“ଏ ମୋ ସ୍ୱାମୀ ପ୍ରକାଶ ମିଶ୍ର ।” ଚମକି ପଡ଼ି ବୁଲି ଦେଖିଲି ବେଳକୁ ଭଦ୍ରମହିଳା ହାତରେ ଚା’କପ ଧରି ଛିଡ଼ା ହୋଇଛନ୍ତି । ସିନିୟର ମାର୍କେଟିଂ ମେନେଜର୍ ଥିଲେ । ତାଙ୍କ କଥା ଛଡ଼ାଇ ମୁଁ କହିଲି, “ହଁ, ମହାଷ୍ଟମୀ ଦିନ ରାତିରେ କାଳୀ ମନ୍ଦିର ଛକରେ ମୋ ଗାଡ଼ିଟା ଖରାପ ହୋଇଥିଲା ବେଳେ ସେ ମୋ ଗାଡ଼ିକୁ ଷ୍ଟାର୍ଟ୍ କରିଦେଇଥିଲେ । ସେ ହିଁ ମୋତେ ତାଙ୍କ କାର୍ଡ଼ ଦେଇ କହିଥିଲେ ଘରକୁ ଆସିବା ପାଇଁ ।” ମୋତେ ସନ୍ଦେହ ଦୃଷ୍ଟିରେ ଦେଖି ଭଦ୍ରମହିଳା କହିଲା, “ମୋ ସ୍ୱାମୀ ଦୁଇବର୍ଷ ତଳେ ଏକ ସଡ଼କ ଦୁର୍ଘଟନାରେ ପ୍ରାଣ ହରେଇଥିଲେ ।” ତାଙ୍କ କଥା ଶୁଣିବାପରେ ମୋ ମୁଣ୍ଡଗୋଳମାଳ ହୋଇଯାଇଥିଲା । ମୁଁ କିଛି କହିବା ପୂର୍ବରୁ ଗୋଟେ କଳା ହବ୍ନର୍ ଗୀଟାର ଧରି ପଶିଆସିଲା ୧୨/୧୩ ବର୍ଷର ଗୋଟିଏ ପିଲା । ଭଦ୍ରମହିଳା କହିଲେ, “ଅଙ୍କଲଙ୍କୁ ନମସ୍କାର କର” ।





ଏ ମୋ ପୁଅ ବଣ୍ଟି । ଟିଭିରୁ ଦେଖି ଜିଦ୍ କରିବାକୁ ତା ବାପା ତା ଜନ୍ମଦିନରେ ଏଇ ଗୀଟାର୍ କିଣିଦେଇଥିଲେ । କିନ୍ତୁ ଜନ୍ମଦିନ ପରଦିନ ହିଁ ସେ ଦୁର୍ଘଟଣାର ଶୀକାର ହୋଇଗଲେ ।... ଅମାନିଆ ଲୁହ ଗୁଡ଼ାକୁ ବନ୍ଦ କରିବାକୁ ଚାହୁଁଥିଲେ ସୁଦ୍ଧା ସେ ମୋ ସାମ୍ନାରେ ବନ୍ଦ କରିପାରୁନଥିଲେ ।

ମୁଁ ପରିବେଶକୁ ହାଲକା କରିବାକୁ ଯାଇ କହୁଥିଲି, "ବଣ୍ଟି, ଚାଲ ତ ଦେଖିବା ତମେ କେମିତି ଗୀଟାର ବଜାଉଛ !" ଭଦ୍ର ମହିଳା ଜଣକ ଘର ଭିତରକୁ ଚାଲି ଯାଇଥିଲେ । ଆଉ ବଣ୍ଟି ଗୀଟାର୍ ବଜାଇବାକୁ ଚେଷ୍ଟା କରୁଥିଲା । ସି ସ୍କେଲର ସାତଟା ଯାକ ଧୂନ୍‌କୁ, କିନ୍ତୁ ଠିକ ସେ ବଜେଇ ପାରୁନଥିଲା । ପାଞ୍ଚଟା ଧୂନ୍ ଠିକ୍ ବାଜୁଥିଲା, ସା, ରେ, ଗା, ମା ଆଉ ପା ପାଖରେ ଆସି ଅଟକି ଯାଉଥିଲା ।

ସହକାରୀ ଅଧ୍ୟାପକ

ରୋଲାଣ୍ଡ ଫାର୍ମାସୀ କଲେଜ

ଖୋଡ଼ାସିଙ୍ଗି, ବ୍ରହ୍ମପୁର





# ଭାରତର ପ୍ରଥମ ଗାନ୍ଧୀମନ୍ଦିର



ନଷ୍ଟା ରଞ୍ଜନ ଦାଶ

ମନ୍ଦିରରେ ପୂଜା ପାଉଛନ୍ତି ମହାତ୍ମା ଗାନ୍ଧୀ

ସମ୍ବଲପୁର ଭତରାରେ ଭାରତର ପ୍ରଥମ ଗାନ୍ଧୀ ମନ୍ଦିର

ଉନ୍ନବଂଶ ଶତାବ୍ଦୀର ଅଶୀ ଦଶକରେ ହରଜନଙ୍କ ଦ୍ୱାରା ତଆର ହୋଇଥିବା ଏ ହେଉଛି ଭାରତର ପ୍ରଥମ ଏବଂ ଅନନ୍ୟ ଗାନ୍ଧି ମନ୍ଦିର । ଛୁଆଁ ଅଛୁଆଁ ଭେଦଭାବ ଆନ୍ଦୋଳନ ଡାକରା ଦେଇଥିବା ମହାତ୍ମାଗାନ୍ଧୀ ଗ୍ରାମବାସୀଙ୍କ ଦୃଷ୍ଟିରେ କୌଣସି ଭଗବାନଙ୍କଠୁ କମ ନଥିଲେ । ହରଜନ ହୋଇଥିବାରୁ ଏକଦା ଏହ ଗାଁର ଗ୍ରାମବାସୀ ଭେଦଭାବର ଶିକାର ହେଉଥିଲେ । କୌଣସି ମନ୍ଦିର ପ୍ରବେଶ ଏମାନଙ୍କ ପାଇଁ ମନା ଥିଲା । ଛୁଆଁ - ଅଛୁଆଁ ଭେଦଭାବକୁ ଦୂର କରବା ଏବଂ ସଚେତନତା ପ୍ରସାର ପାଇଁ ଭତରା ଗାଁର ବୁଦ୍ଧିଜୀବମାନେ ଗାଁରେ ମହାତ୍ମା ଗାନ୍ଧୀଙ୍କ ମନ୍ଦିର ନର୍ମାଣ କରବା ପାଇଁ ସିଦ୍ଧାନ୍ତ ନେଇଥିଲେ । ସେହ ସ୍ଥାନ ପାଲଟିଗଲା ଦେଶପ୍ରେମୀଙ୍କ ତୀର୍ଥସ୍ଥଳ । ସମ୍ବଲପୁର ଜଲ୍ଲା ଭତରା ଆଜ ସାରା ଦେଶର ଚର୍ଚ୍ଚିତ ସ୍ଥାନରୁ ଅନ୍ୟତମ ।







ଗାନ୍ଧି ମନ୍ଦିରରେ ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ଗାନ୍ଧୀଜିଙ୍କ ପ୍ରତିମୂର୍ତ୍ତୀରେ ଧୂପ, ଦୀପ ଓ ଫୁଲ ଦେଇ ପୂଜା କରାଯାଏ । ବିଭିନ୍ନ ଫଳମୂଳ ଓ ମିଷ୍ଟାନ୍ନ ଭୋଗ ଲଗାଯାଏ । ଜାନୁଆରୀ ୨୬ ଗଣତନ୍ତ୍ର ଦିବସ, ଅଗଷ୍ଟ ୧୫ ସ୍ୱାଧିନତା ଦିବସ, ଅକ୍ଟୋବର ୨ ଗାନ୍ଧୀ ଜୟନ୍ତି ଓ ଜାନୁଆରୀ ୩୦ ତାରିଖରେ ମନ୍ଦିରରେ ବିଶେଷ ପୂଜାର୍ଚ୍ଚନା କରାଯାଏ । ଏହି ଦିନମାନଙ୍କରେ ମନ୍ଦିରକୁ ସ୍ଥାନୀୟ ଲୋକଙ୍କ ସୁଅ ଛୁଟେ । ପ୍ରତିଦିନ ସକାଳେ ରାମଧୂନ ଓ ସନ୍ଧ୍ୟାରେ ରାମାୟଣ ଓ ଭାଗବତ ଆଦି ପଢ଼ାଯାଏ । "ରଘୁପତି ରାଘବ ରାଜା ରାମ" ବାପୁଙ୍କର ଏହି ପ୍ରିୟ ଭଜନଟି ମଧ ଏହି ମନ୍ଦିରରେ ନିୟମିତ ଭାବେ ବୋଲାଯାଇଥାଏ । ପ୍ରତିଦିନ ମନ୍ଦିରରେ ପୂଜା ହୋଇ ଭୋଗ ଲାଗିବା ପରେ ହରିଜନପଡ଼ା ସାହିର ଲୋକମାନଙ୍କୁ ଭୋଗ ବଣ୍ଟାଯାଏ ।

ମନ୍ଦିର ଭିତର ଗର୍ଭଗୃହରେ ଗାନ୍ଧୀଜିଙ୍କର ୩.୫ଫୁଟ ଉଚ୍ଚତାର ମୂର୍ତ୍ତୀ ପୂଜା ପାଉଛନ୍ତି । ଚତୁର୍ପାର୍ଶ୍ୱରେ ବରପୁତ୍ରଗଣ ଯଥା ବାପୁଙ୍କ ସହ ସୁବାଷ ଚନ୍ଦ୍ର ବୋଷ, ରବୀନ୍ଦ୍ରନାଥ ଠାକୁର, ଆମ୍ବେଦକର, ଶ୍ରୀ ଅରବିନ୍ଦ ଓ ଅନ୍ୟାନ୍ୟ ମହାପୁରୁଷମାନଙ୍କ ଫଟୋଚିତ୍ର ରହିଛି । ମନ୍ଦିର ସମ୍ମୁଖରେ ଅଶୋକ ସ୍ତମ୍ଭ ଅବସ୍ଥିତ । ଏହାର ଦ୍ୱାର ଦେଶରେ ଭାରତମାତାଙ୍କର ମୂର୍ତ୍ତି ଦେଖିବାକୁ ମିଳିଥାଏ । ମନ୍ଦିର ଶିଖରରେ ତ୍ରିରଙ୍ଗା ପତାକା ଉଡୁଛି । ମନ୍ଦିର ପରିସରରେ ଗାନ୍ଧୀଜିଙ୍କ ଜୀବନର ବିଭିନ୍ନ ସ୍ମରଣୀୟ ଘଟଣାବଳୀ ସହ, ତିନି ମାଙ୍କଡ଼ର ପ୍ରତିଛବି ରହିଛି ।

ରେଢାଖୋଲର ତତ୍କାଳୀନ ବିଧାୟକ ଅଭିମନ୍ୟୁ କୁମାରଙ୍କ ଉଦ୍ୟମରେ ୧୯୭୧ ମସିହାରେ ମନ୍ଦିରର ଭିତ୍ତିପ୍ରସ୍ତର ସ୍ଥାପନ କରାଯାଇଥିଲା । ଗ୍ରାମବାସୀଙ୍କ ମିଳିତ ଉଦ୍ୟମରେ ମନ୍ଦିର ନିର୍ମାଣ ଶେଷ ହୋଇ, ୧୯୭୪ ଅପ୍ରେଲ ୧୧ତାରିଖ ଦିନ ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ଦ୍ୱାରା ମନ୍ଦିର ଉଦଘାଟନ କରାଯାଇଥିଲା । ସହର ଉପକଣ୍ଠରେ ଥିବା ଭିତରା ହରିଜନପଡ଼ାଠାରେ



Open Magazine





ମନ୍ଦିରଟି ଗଢ଼ିଉଠିଲା । ସ୍ଥାନୀୟ ଶିଳ୍ପୀ ତୃପ୍ତି ଦାସଗୁପ୍ତ ଯେ କି ଚନ୍ଦ୍ରଶେଖର ବେହେରା ଜିଲ୍ଲା ହାଇସ୍କୁଲର ଜଣେ ଜଣାଶୁଣା ଅଙ୍କନ ଶିକ୍ଷକ, ମନ୍ଦିରର ରୂପ ଦେଇଥିଲେ । ଏଥିରେ ଥିବା ଗାନ୍ଧିଙ୍କ ବ୍ରୋଞ୍ଜ ପ୍ରତିମା ଗଞ୍ଜାମର ଖଲକୋଟ ଆର୍ଟ କଲେଜର ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ତତ୍କାଳୀନ ରାଜସ୍ୱମନ୍ତ୍ରୀ ବ୍ରଜ ମୋହନ ମହାନ୍ତି ଏହି ପ୍ରତିମୂର୍ତ୍ତୀ ପାଇଁ ୫୦୦୦ଟଙ୍କା ଅନୁଦାନ ଦେଇଥିଲେ । ଗ୍ରାମବାସୀ କେବଳ ଅର୍ଥ ନୁହେଁ ଶ୍ରମଦାନ କରି ଏହି ଭବ୍ୟ ମନ୍ଦିରକୁ ତୋଳାଇଥିଲେ । ପରେ ଆଦିତ୍ୟ ବିର୍ଲା ଗ୍ରୁପ ଏହି ମନ୍ଦିରର ନବୀକରଣ ଓ ସୌନ୍ଦର୍ଯ୍ୟକରଣ କାମରେ ସହାୟତା ଦେଇଥିଲେ ।

କେମିତି ଯିବେ: ଗାନ୍ଧୀ ମନ୍ଦିରଠାରୁ ଅଧ କିମି ଦୂରରେ ୫୩ନଂ ଜାତୀୟ ରାଜପଥ ରହିଛି । ୮ କିମି ଦୂରରେ ରହିଛି କ୍ଷେତରାଜପୁର ରେଳ ଷ୍ଟେସନ । ୨୬କିମି ଦୂରରେ ରହିଛି ଜମାଦାରପାଲି ଏୟାର ଷ୍ଟ୍ରିପ ଓ ୬୧କିମି ଦୂରତାରେ ରହିଛି ଝାରସୁଗୁଡ଼ା ବିମାନ ବନ୍ଦର । ଭୁବନେଶ୍ୱର ସମ୍ବଲପୁର ବସ (୩୦୦ କିମି) ବା ଟ୍ରେନ ଯୋଗେ ଆସି, ବସଷ୍ଟାଣ୍ଡ ବା ଷ୍ଟେସନଠାରୁ ଅଟୋ ସାହାଯ୍ୟରେ ମନ୍ଦିରକୁ ଯିବା ସୁବିଧା ମଧ୍ୟ ଅଛି ।





# ଇଲେକ୍ସନ୍ ନୁହେଁ ସିଲେକ୍ସନ୍



ନିଷ୍ଠା ରଞ୍ଜନ ଦାଶ

ଇଲେକ୍ସନ ନୁହେଁ ହୁଏ ସିଲେକ୍ସନ ! ହିଂସା ରୋକିବାରେ ସମ୍ବଲପୁରର ଗଙ୍ଗାଧର ମେହେର କଲେଜ ପାଲଟିଛି ଅନନ୍ୟ ଉଦାହରଣ । NAAC ଦ୍ୱାରା ପ୍ରଶଂସିତ ।

ରାଜ୍ୟର ବିଭିନ୍ନ କଲେଜମାନଙ୍କରେ ନିକଟରେ ଘଟୁଥିବା ନିର୍ବାଚନୀ ହିଂସା ବାବଦରେ ଆପଣ ଅବଗତ ଥିବେ । ଏସବୁ ଏବେର ନୂଆ କଥା ନୁହେଁ ଅତୀତରେ ରାଜ୍ୟର ବଡ଼ ଶିକ୍ଷାନୁଷ୍ଠାନ ଉତ୍କଳ ବିଶ୍ୱବିଦ୍ୟାଳୟ ବହୁଥର ଜାତୀୟସ୍ତରରେ ଲଜ୍ଜିତ ହୋଇଛି । କେବଳ କଲେଜ ପରିସରରେ ହିଂସା ସୀମିତ ରହୁନାହିଁ । ଅପରପକ୍ଷଙ୍କୁ ଧମକ, ମରଣାନ୍ତକ ଆକ୍ରମଣ, ବସ ପୋଡ଼ି, ଏଟିଏମ ମେସିନ, ବ୍ୟାଙ୍କ, ସରକାରୀ ଅଫିସ ଆଦି ଭଙ୍ଗାରୁଜା ଏମିତିକି ହସ୍ପିଟାଲ ମଧ୍ୟ ଆକ୍ରମଣରୁ ବାଦ ପଡ଼ୁନାହିଁ । କହିବାକୁ ଗଲେ ହିଂସା ଛାତ୍ରଛାତ୍ରୀମାନଙ୍କ ମନରେ ବିଷ ମଞ୍ଜି ବୁଣି ଏତେ କମ ବୟସରୁ କବଳିତ କରୁଛି । ଦେଶର ଭବିଷ୍ୟତ ଅଯଥାରେ ନଷ୍ଟ ଆଡ଼କୁ ଗତି କରୁଛନ୍ତି । ଲାଗେ ହିଂସା ଓ ଦୁର୍ନୀତି ତାର କ୍ଷେତ୍ର ଏଇଠୁ ହିଁ ପ୍ରସ୍ତୁତ କରୁଛି ।





ତେବେ ଶିକ୍ଷିତ ଛାତ୍ରଛାତ୍ରୀଙ୍କଠାରୁ ଏ ସମାଜ କ'ଣ ଆଶାକରେ? ସାଧାରଣ ଜନତାଙ୍କ ଥାଏ ଏପର ଅନେକ ପ୍ରଶ୍ନ । ଛାତ୍ର ସମାଜ ଏତେ ଉଗ୍ରମୁଖା କାହିଁକ? ବନ୍ଦ ପାଳନ ବେଳେ ନଜ ସମ୍ପତ୍ତିକୁ ନଷ୍ଟ କରବା ପାଇଁ କାହାର ହାତ ଯବକ? ସରକାରୀ ସମ୍ପତ୍ତି ନଷ୍ଟ କର ପାଆନ୍ତ କ'ଣ? ପବତ୍ର ଶିକ୍ଷା ଅନୁଷ୍ଠାନ ଓ ନର୍ବାଚନରେ ନ୍ୟସ୍ତସ୍ୱାର୍ଥ ଥିବା କୁଚକ୍ରୀ ରାଜନୈତକ ବ୍ୟକ୍ତିବଶେଷଙ୍କ ହସ୍ତକ୍ଷେପ କାହିଁକ? ନର୍ବାଚନ ପୂର୍ବରୁ ହଷ୍ଟେଲ ଛାତ୍ରଛାତ୍ରୀ ଶୂନ୍ୟ ହୋଇଯାଏ କାହିଁକ? ନର୍ବାଚନ ମତଦାନ ହାର କମ କାହିଁକ? ବର୍ଷକେ ଗୋଟିଏ ମାସ ନର୍ବାଚନ ପିଛା ନଷ୍ଟ କରଦଆଯାଏ କାହିଁକ? ଅନ୍ୟପକ୍ଷରେ ମଧ୍ୟ ଦେଖାଯାଇଛ ଅତୀତରେ ଏପର ଆତଙ୍କ ସୃଷ୍ଟିକାରୀ ଛାତ୍ରଗୋଷ୍ଠୀଙ୍କ ଉପରେ ଉଚତ କାର୍ଯ୍ୟାନୁଷ୍ଠାନ ନଆଯାଇ ନାହିଁ । ରାଜନୈତକ ଗ୍ରୁପ ହେଉ କ ଛାତ୍ରଙ୍କ ପ୍ରତ୍ୟକ୍ଷ ଧମକ ହେଉ ନର୍ବାଚନ ପରେ ସବୁ ଶିଥିଳ ପଡ଼ିଯାଏ, ଯେମିତ ସମସ୍ତ ଆତଙ୍କିଙ୍କୁ କ୍ଷମା ମିଳଗଲା । ଶିକ୍ଷା ଅନୁଷ୍ଠାନ ଏକ ସୁସ୍ଥ ପରବେଶ ହୋଇ ରହୁନାହିଁ କାହିଁକ?

କଲେଜ ନର୍ବାଚନର ମୂଳ ଲକ୍ଷ୍ୟ ହେଉଛ ଛାତ୍ରଛାତ୍ରୀଙ୍କ ଦାବୀ ଓ ସମସ୍ୟାଗୁଡ଼ିକୁ ସେମାନଙ୍କ ମାଧ୍ୟମରେ ସମାଧାନ ସହ ପାଣ୍ଠିର ସୁବନଯୋଗ କରବା । କନ୍ତୁ ଯେଉଁମାନେ ଓଡ଼ିଶାର ଏପର ଶିକ୍ଷାନୁଷ୍ଠାନ ସହ ସଂଶ୍ଳିଷ୍ଟ ଅଛନ୍ତ ସେମାନେ ହୃଦବୋଧ କରନ୍ତ ଯେ ପ୍ରାର୍ଥୀମାନଙ୍କଠାରୁ ଯୁକ୍ତାତ୍ମକ ଫଳ ଆଶା ବହୁତ କମ । କାରଣ ନର୍ବାଚତ ପ୍ରାର୍ଥୀ ଦୁର୍ନୀତ ପ୍ରିୟ ଅଟନ୍ତ । ଅନେକ ସଂସ୍ଥାଠାରୁ ଲାଞ୍ଚନେଇଥାନ୍ତ । ହଂସା ଘଟାନ୍ତ । ସରକାରୀ ସମ୍ପତ୍ତି ଭଙ୍ଗାରୁଜା କର ନଷ୍ଟ କରନ୍ତ । ରେଗୁଲାର କ୍ଲାସରେରେ ବ୍ୟାଘାତ ସୃଷ୍ଟି କରନ୍ତ । ତେବେ ବାସ୍ତବ ଠାରୁ ଦୂରେଇ ଯାଉଥିବା ଏପର ନର୍ବାଚନ କରାଯିବ କାହିଁକ?

ଓଡ଼ିଶାରେ ଏମିତ କେତୋଟି ହାତଗଣତ ଶିକ୍ଷାନୁଷ୍ଠାନ ଅଛ ଯେଉଁଠି ଏପର ନର୍ବାଚନୀ ଉପରେ ଅଙ୍କୁଶ ଲଗିଛ ଏବଂ ନୟନ୍ତ୍ରତ ହୋଇ ପରୋକ୍ଷ ଭାବେ ନର୍ବାଚନ ସମ୍ଭବ ହେଉଛ । ସମ୍ବଲପୁରର ଗଙ୍ଗାଧର ମେହେର ବଶ୍ୱବଦ୍ୟାଳୟ, ଛାତ୍ର ସଂସଦ ନର୍ବାଚନ ପାଇଁ ଏପର ଏପର ଉପାୟ ଅବଲମ୍ବନ କରୁଛନ୍ତ । ଏହାଦ୍ୱାରା ନର୍ବାଚନ କୌଣସି ଗଣ୍ଡଗୋଳ କମ୍ବା ହୋ ହାଲ୍ଲା ମଧ୍ୟରେ ନହୋଇ ଖୁବ୍ ଶାନ୍ତପୂର୍ଣ୍ଣ ଭାବେ ହୋଇଆସୁଛ । ସମ୍ପୃକ୍ତ ନର୍ବାଚନ ପ୍ରକ୍ରୟାକୁ ନାକ





କମିଟି ଉଚ୍ଚ ପ୍ରଶଂସା କରିଛନ୍ତି ।

ଅତୀତରେ ଗଙ୍ଗାଧର ମେହେର କଲେଜ ନିର୍ବାଚନ ବେଳେ ହିଂସା ଦେଖାଦେଇଥିଲା ଓ ନିର୍ବାଚନ ଖୁବ୍ ଖର୍ଚ୍ଚ ବହୁଳ ହେବାରେ ଲାଗିଲା । ୧୯୯୮ ମସିହାରେ ନିର୍ବାଚନକୁ କେନ୍ଦ୍ର କରି ଏକ ଗଣ୍ଡଗୋଳ ସଂଗଠିତ ହେଲା ତଥା ଶଙ୍କର୍ଷଣ ଦାଶଙ୍କୁ ହତ୍ୟା କରାଗଲା । ଯାହାକୁ ନେଇ ୧୯୯୯ ମସିହାରୁ ସିଧାସଳଖ ନିର୍ବାଚନ ପ୍ରକ୍ରିୟାକୁ ବନ୍ଦ କରି ଦିଆଗଲା । ଏହା ପରେ ଆଉ ଗଣ୍ଡଗୋଳ କିମ୍ବା ହିଂସାର କୌଣସି ସ୍ଥାନ ନାହିଁ । କିଛିବର୍ଷ ପରେ ପରୋକ୍ଷ ନିର୍ବାଚନ ଆରମ୍ଭ ହେଲା । ୨୦୧୪ ମସିହାରେ ସ୍ୱୟଂଶାସିତ ଗଙ୍ଗାଧର ମେହେର କଲେଜ ଗଙ୍ଗାଧର ମେହେର ବିଶ୍ୱବିଦ୍ୟାଳୟରେ ପରିଣତ ହେବା ପରେ ମଧ୍ୟ ଏହାର ପୂର୍ବ ନିର୍ବାଚନୀ ପ୍ରକ୍ରିୟାରେ ନିର୍ବାଚନ ଚାଲୁରହିଲା ।

ପ୍ରତିବର୍ଷ ଗୋଟିଏ ଇଲେକ୍ଟୋରାଲ, କଲେଜ ଛାତ୍ର ସଂସଦ ପ୍ରତିନିଧିମାନଙ୍କୁ ମନୋନୀତ କରନ୍ତି । ଉପସ୍ଥାନ ଏବଂ ଶିକ୍ଷାଗତ ପାରଦର୍ଶିତାକୁ ବିଚାରକୁ ନେଇ ପ୍ରତ୍ୟେକ କ୍ଲାସ ଦୁଇଜଣ ଲେଖାଏଁ ପ୍ରତିନିଧିଙ୍କୁ ମନୋନୟନ କରନ୍ତି । ଏହି ମନୋନୀତ ପ୍ରତିନିଧିଙ୍କୁ ନେଇ ଇଲେକ୍ଟୋରାଲ କଲେଜ ଗଠିତ ହୁଏ । କେବଳ ଏଥିରୁ ହିଁ ଛାତ୍ର ପ୍ରତିନିଧିମାନେ ବିଭିନ୍ନ ପଦପଦବୀ ସକାଶେ ମନୋନୟନ ପତ୍ର ଦାଖଲ କରନ୍ତି । ପ୍ରେସିଡେଣ୍ଟ, ସେକ୍ରେଟାରୀ ଏବଂ ଅନ୍ୟ ପଦପଦବୀ କେବଳ ପ୍ରତିନିଧିମାନଙ୍କ ଦ୍ୱାରା ଭୋଟ ଯୋଗେ ବଛିହୁଅନ୍ତି । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଜଣେ ବରିଷ୍ଠ ଅଧ୍ୟାପକଙ୍କୁ ପରାମର୍ଶଦାତା ମନୋନୀତ କରନ୍ତି । ଏହି ପରାମର୍ଶଦାତା ଅନ୍ୟ ଅଧ୍ୟାପକମାନଙ୍କ ସହଯୋଗ କ୍ରମେ ନିର୍ବାଚନ ପରିଚାଳନା କରନ୍ତି । ଏପରି ପରୋକ୍ଷ ନିର୍ବାଚନ ପ୍ରକ୍ରିୟା, ପ୍ରତିନିଧିଙ୍କ ବୈଶିଷ୍ଟ୍ୟକୁ ପୂର୍ଣ୍ଣତଃ ପ୍ରତିପାଦନ କରିବା ସହ ହିଂସା କମ କରିଥାଏ ।

ତେବେ ଏବେ ସମୟ ଆସିଛି । ରାଜ୍ୟର ସମସ୍ତ କଲେଜରେ ପରୋକ୍ଷ ନିର୍ବାଚନ ପାଇଁ ସରକାର ଥରେ ଚିନ୍ତା କରିବା ଉଚିତ । ଅତି କମରେ ହିଂସାଠୁ ଶିକ୍ଷା ଅନୁଷ୍ଠାନ ଗୁଡ଼ିକ ଦୂରେଇ ରହିପାରିଲେ ଛାତ୍ରଛାତ୍ରୀଙ୍କ ବିଦ୍ୟା ଅର୍ଜନର ମହତ ଉଦ୍ଦେଶ୍ୟ ସାର୍ଥକ ହୋଇପାରିବ ।



# ଦେବୀ



ରମାକାନ୍ତ ଦାଶ

ସିଦ୍ଧାର୍ଥ ଯାହାକୁ ମାଆ ବୋଲି କହେ ସେ ପ୍ରକୃତରେ ତାର ମାଆ ନୁହେଁ, ସାବତ ମାଆ । ତାକୁ ଯେତେବେଳେ ଦଶବର୍ଷ ହୋଇଥିଲା । ସେତେବେଳେ ତା'ର ବୋଉ କୌଣସି ଦୁର୍ଭାଗ୍ୟରେ ଆରପାରିକୁ ଚାଲିଗଲା । ତାର ଦୁଇବର୍ଷ ପରେ ବାପା ଦ୍ୱିତୀୟ ବିବାହ କରିଥିଲେ ଓ ଘରକୁ ଆସିଥିଲା ନୂଆ ମାଆ ।

ନୂଆ ମାଆ ଦେଖିବାକୁ ଆଦୌ ତା ବୋଉ ପରି ନଥିଲା । ବୋଉ ତାର ଦେବୀ ପ୍ରତିମା ପରି ସୁନ୍ଦରୀ ଲାଗୁଥିଲା ଆଉ ନୂଆ ମାଆ କୌଣସି ସିନେମାର ଖଳନାୟିକା ପରି ପ୍ରତ୍ୟୟ ହେଉଥିଲା ତାକୁ । ତେଣୁ ନୂଆ ମାଆ ତାକୁ ଯେତେ ସ୍ନେହ ଆଦର କଲେ ବି ସେ ତାକୁ ନିଜର ମଣି ପାରିନଥିଲା । ବାପା ଯେତେ ବୁଝାଇଲେ, ଆକଟ କଲେ କି ଆକ୍ରୋଶ ପ୍ରକାଶ କଲେ ବି ସେ ତାକୁ ବୋଉ ବୋଲି କେବେ ସମ୍ବୋଧନ କରି ପାରିନଥିଲା । ସେ ତାକୁ ନୂଆ ମାଆ ବୋଲି ଡାକୁଥିଲା । ଯାହା କାଳକ୍ରମେ ମାଆରେ ପରିଣତ ହୋଇଯାଇଥିଲା ।

ଏ ସବୁ ତିରିଶି ବର୍ଷ ତଳର କଥା । ଏବେ ବାପା ବି ନାହାନ୍ତି ଆଉ । ହଠାତ୍ ଦିନେ ବାପା ବଜାର ଯାଇଥିଲେ ସଉଦା କରିବାକୁ କିନ୍ତୁ ଫେରିଲେ ଶବ ହୋଇ । ବାଟରେ ତାଙ୍କ ସାଇକେଲକୁ ଗୋଟିଏ ଟ୍ରକ୍ ଧକ୍କା ଦେବାଫଳରେ ଘଟଣା ସ୍ଥଳରେ ହିଁ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା । ଖବର ପାଇ ଗାଁକୁ ଯାଇଥିଲା ସିଦ୍ଧାର୍ଥ । ଶୁଦ୍ଧିକ୍ରିୟା ସରିବା ପରେ ମାଆକୁ ସାଙ୍ଗରେ ଧରି ଫେରିଥିଲା ।

ସାଙ୍ଗରେ ମାଆକୁ ଆଣିବାକୁ ଆଦୌ ପସନ୍ଦ କରିନଥିଲା ତା ସ୍ତ୍ରୀ ସୁଲଗ୍ନା । ସେଥିପାଇଁ ସେ ସବୁବେଳେ ଗର ଗର ହେଉଥିଲା ସିଦ୍ଧାର୍ଥ ଉପରେ । ତାର ଇଚ୍ଛା ମାଆ ସେଇ ଗାଁରେ ରହିଥାନ୍ତା । ଏମିତି ବି କୋଉ ନିଜର ହେଇଛି ଯେ ପାଖରେ ରଖି ସେମାନେ ସେବା ଯତ୍ନ କରିବେ !





କିନ୍ତୁ ସିଦ୍ଧାର୍ଥର ବିବେକ ବାଧା ଦେଲା ତାକୁ । କିଛିଦିନ ହେଲା ମାଆ ପକ୍ଷାଘାତ ରୋଗରେ ପୀଡ଼ିତ ଥିଲା । ବାଁ ପଟ ଗୋଡ଼ ଓ ହାତ ସଂପୂର୍ଣ୍ଣ ଅଚଳ କହିଲେ ଚଳେ । ବାପା ଥିଲା ବେଳେ ତା କଥା ଦେଖାଶୁଣା କରୁଥିଲେ । କିନ୍ତୁ ଏବେ ସେ ଚାଲିଗଲା ପରେ ମାଆ ପୁରା ଏକାକୀ ହୋଇଗଲା, କାରଣ ମାଆର କିଛି ପିଲାପିଲି ନଥିଲେ । ମାଆ ତାର ବାଞ୍ଝ ବୋଲି ଗାଁ ମାଇପେ କୁହାକୁହି ହେବା ପିଲାଦିନେ ଶୁଣିଥିଲା ସିଦ୍ଧାର୍ଥ ।

ମାଆ ପାଖରେ ରହିବା ପାଖା ପାଖି ଛଅ ମାସ ହୋଇଗଲାଣି । ପ୍ରଥମେ ପ୍ରଥମେ ସୁଲଗ୍ନା ତାର କିଛି ଦେଖାଶୁଣା କରୁଥିଲା, ଏବେ କିନ୍ତୁ ପ୍ରାୟ ତାକୁ ହିଁ କରିବାକୁ ପଡୁଛି ସବୁକିଛି । ଆଗରୁ ମାଆ କିଛି ଟା ଚଳପ୍ରଚଳ କରିପାରୁଥିଲା, ଏବେ ସଂପୂର୍ଣ୍ଣ ଅଚଳ । ଦିନରାତି ଖଟଟା ଉପରେ ପଡ଼ି ରହିଥାଏ । ଖଟରେ ପଡ଼ି ପଡ଼ି ଦେହରେ ବେଡ୍ ସୋର୍ ହୋଇଗଲାଣି । ଦେହସାରା ଘା’ ଓ ପୂଜ ରକ୍ତ । ଆଉ ପାରୁନଥିଲା ସିଦ୍ଧାର୍ଥ । ମନେ ମନେ ଭାବୁଥିଲା ଯେତେ ଶୀଘ୍ର ମାଆଟା ମରିଯାଆନ୍ତା କି ସେ ମୁକ୍ତି ପାଇଯାଆନ୍ତା ।

ଏତିକି ବେଳେ ସିଦ୍ଧାର୍ଥର ଜଣେ ସହକର୍ମୀ ପରାମର୍ଶ ଦେଲେ ତାକୁ, “ବୁଢ଼ୀ ଆର ଜନ୍ମରେ କିଛି ବଡ଼ ପାପ କରିଛି ନିଶ୍ଚୟ, ସେଥିପାଇଁ ଯମ ତାକୁ ଛୁଉଁନି । ପୁରୀ ଯାଇ ପ୍ରାୟଶ୍ଚିତ କଲେ ମୁକ୍ତି ପାଇଯିବ ବୁଢ଼ୀ ।”

କଥାଟା ଠିକ୍ ଲାଗିଥିଲା ସିଦ୍ଧାର୍ଥକୁ । ସେଇଥି ପାଇଁ ସେ ପୁରୀ ଯାଇଥିଲା । ମୁକ୍ତିମଣ୍ଡପରେ ପଣ୍ଡିତଙ୍କ ପରାମର୍ଶ କରି ପ୍ରାୟଶ୍ଚିତ ବ୍ୟବସ୍ଥା କରିଥିଲା । ଏକୋଇଶି ବ୍ରାହ୍ମଣଙ୍କୁ ମହାପ୍ରସାଦ ଖାଇବାକୁ ଦେଇ ନୂତନ ବସ୍ତ୍ର ଦାନ କରିଥିଲା । ମାଆ ଶୀଘ୍ର ମରିଗଲେ ବାନା ବାନ୍ଧିବ ବୋଲି ସଂକଳ୍ପ କରି କଳ୍ପବଟରେ ଗୋଡ଼ି ବାନ୍ଧି ଘରକୁ ଫେରିଥିଲା ।

ସିଦ୍ଧାର୍ଥର ପ୍ରାୟଶ୍ଚିତ ହେଉ ଅବା ଉପଯୁକ୍ତ ଚିକିତ୍ସାର ଅଭାବ, ସତକୁ ସତ ସେ ପୁରୀରୁ ଫେରିବାର ସାତଦିନ ପରେ ଆର ପାରିକି ଚାଲି ଯାଇଥିଲା ମାଆ । କିନ୍ତୁ ମରିବା ପୂର୍ବରୁ ସେ ସିଦ୍ଧାର୍ଥର ମନ କଥା ଜାଣିପାରିଥିଲା ବୋଧେ । ଏପରିକି ଜାଣି ପାରିଥିଲା ସେ ପୁରୀ ଯିବାର କାରଣ । ସେଇଥିପାଇଁ ବୋଧହୁଏ ତା ପରଠୁ ତା’ ଆଖିରୁ ସବୁବେଳେ ଗଡୁଥିଲା ନୀରବ ଅଶ୍ରୁ । ସେ ଯାହା ହେଉ ମାଆ ଚାଲିଯିବା ପରେ ଖୁବ୍ ଆଶ୍ୱସ୍ତ ଅନୁଭବ କରିଥିଲା ସିଦ୍ଧାର୍ଥ ।

ମାଆ ଚାଲିଗଲା ପରେ ଗାଁର ଜମିବାଡ଼ି ସବୁ ବିକିଦେଇ ସହରରେ ନିଜର ଘର ଖଣ୍ଡେ କରିବାକୁ ମନସ୍ଥ କରିଥିଲା ସିଦ୍ଧାର୍ଥ । ସେଥିପାଇଁ ପଇସା ସବୁ ଦରକାର ଥିଲା ତାର, ଯାହା ଥିଲା





ମାଆର ପୁରୁଣା ଟ୍ରଙ୍କ ପେଢ଼ିରେ । ପଟ୍ଟା ଖୋଜବାକୁ ମାଆର ସେଇ ଟ୍ରଙ୍କ୍ ଖୋଲଥିଲା ସିଦ୍ଧାର୍ଥ । ସେଥିରେ ଥିଲା ଖଣ୍ଡେ ବଉଳ ପାଟ ସମ୍ଭବତଃ ମାଆ ବବାହ ବେଳର, ହଳେ ଧୋତ, ବାପାଙ୍କ ଭଙ୍ଗା ଚଷମା ଓ ତା' ଜାତକ । ଏତକ ଥିଲା ମାଆର ଶେଷ ସମ୍ବଳ । ଏହା ବ୍ୟତୀତ ଥିଲା ଘରର ପଟ୍ଟା ଓ ଗୋଟେ ଲଫାଫାରେ ଗୃର ଚଉଡା ଖଣ୍ଡେ କାଗଜ ।

ମାଆର ସମ୍ବଳ ଭତରେ ସେ କାଗଜ ଖଣ୍ଡିକ କଣ ଜାଣିବା ପାଇଁ ଜଜ୍ଞାସା ସୃଷ୍ଟି ହେଲା ସିଦ୍ଧାର୍ଥ ମନରେ । ମାଟିଆ ଦଶୁଥିବା ପୁରୁଣା କାଗଜଟି ଏତେ ଜୀର୍ଣ୍ଣଶୀର୍ଣ୍ଣ ଥିଲା ଯେ ଖୋଲଲା ବେଳେ ଚରଯିବାର ଭୟ ହେଉଥିଲା । ସେଥିପାଇଁ ଅତ ଯତ୍ନ ସହକାରେ ସେଇଟିକୁ ଖୋଲଲା ସିଦ୍ଧାର୍ଥ । ବାପାଙ୍କ ହସ୍ତାକ୍ଷରରେ ଲଖିତ ମାଆ ଉଦ୍ଦେଶ୍ୟରେ ଗୋଟେ ଚଠି ଦେଖି ଆଶ୍ଚର୍ଯ୍ୟ ହେଲା ସେ । ଚଠିଟିକୁ ପଢ଼ିବାକୁ ଲାଗିଲା ସିଦ୍ଧାର୍ଥ ।

ସ୍ନେହର ତମାଳ,

ଆମର ବବାହ ଦନଠୁ ତୁମକୁ ଗୋଟେ କଥା କହବ ବୋଲ ମନରେ ଭାବଛ । କନ୍ତୁ କେମିତ କହବ ଜାଣିପାରୁନ । କାରଣ ଯାହା ହେଲେ ବ ତୁମେ ଜଣେ ନାରୀ । ଜାଣେନ ତୁମେ କେମିତ ଗ୍ରହଣ କରବ କଥାଟିକୁ । ସେଇଥିପା ଭାବ ଭାବ ମୁହଁ ଖୋଲ ପାରୁନ ମୁଁ । ତେଣୁ ବାଧ ହୋଇ ଏଇ ଚଠି ମାଧ୍ୟମରେ ଲେଖି ଜଣାଉଛ ।

ତମାଳ, ତମକୁ ବବାହ କରବାରେ ମୋ ପାଇଁ ଗୋଟେ ସ୍ତ୍ରୀର ଆବଶ୍ୟକତା ଯେତକ ନଥିଲା, ତାଠୁ ଅଧିକ ଆବଶ୍ୟକ ଥିଲା ସିଦ୍ଧାର୍ଥ ପାଇଁ ଗୋଟେ ମାଆର । ମାଆଛେଉଣ୍ଡ ପିଲାଟା ପ୍ରତ କେବେ ସ୍ନେହ ମମତାରେ ଊଣା କରବନ । ସେଇଥିପାଇଁ ମୁଁ ଗୋଟେ ନଷ୍ପତ୍ତି ନେଇଛ, ଆମର ଆଉ ଛୁଆପିଲା କଛ ନ ହେଉ । କାରଣ ନଜର ସନ୍ତାନ ଥିଲା ଜଣେ ସ୍ତ୍ରୀ ଅନ୍ୟ କାହାକୁ ବ ସେଇ ଏକା ମାତ୍ରାରେ ସ୍ନେହ ଦେଇପାରବନ ବୋଲ ମୁଁ ଭାବୁଛ । ଏହା ନଶ୍ଚୟ ସିଦ୍ଧାର୍ଥ ପ୍ରତ ଅନ୍ୟାୟ ହେବ । ତେଣୁ ଆଶା କରୁଛ, ତୁମେ ନଶ୍ଚୟ ମୋ ନଷ୍ପତ୍ତିରେ ସହଯୋଗ କରବ ।

ତୁମର - ମୁଁ ।

ସ୍ଥାଣୁ ପାଲଟି ଯାଇଥିଲା ସିଦ୍ଧାର୍ଥ । ଆଖିରେ ତାର ଲୁହ ଭର୍ତ୍ତି । ମାଆ ତା'ର ମାତୃତ୍ୱକୁ ବଳ ଦେଇଛ ତା ପାଇଁ । ବାଞ୍ଝ ହେବାର ମିଥ୍ୟା ଅପବାଦ ସେ ହସି ହସି ସହଛ । ସେଇଥି ପାଇଁ ବୋଧହୁଏ ନଜର ଛୁଆପିଲା ନ ହେବାର ଦୁଃଖ ବା ଅନୁଶୋଚନା ସେ କେବେ ବ ଦେଖିନ ତା ମୁହଁରେ । ଏବେ ତା'ର ମାଆ ସହରେ ଗୋଟେ ଦେବୀ ପର ଲାଗୁଥିଲା ସିଦ୍ଧାର୍ଥକୁ ।





ସିଦ୍ଧାର୍ଥ ଭାବୁଥିଲା ମନେ ମନେ, ସେ କଣ କଲା ! ଦେବୀ ପରି ସେଇ ମାଆର ମୃତ୍ୟୁ କାମନା କରି ସେ ଯାଇଥିଲା ପୁରୀ ପ୍ରାୟଶ୍ଚିତ କରିବାକୁ । କିନ୍ତୁ ସେମିତି କରି ଏବେ ସେ ଯେଉଁ ପାପ କରିଛି, କେମିତି ହେବ ତା'ର ପ୍ରାୟଶ୍ଚିତ ? କିଏ କରିବ ତାହା ତା ପାଇଁ ? ଏତେବଡ଼ ପାପରୁ ସେ କେବେ ମୁକ୍ତି ପାଇପାରିବ ତ ???

ଭାରତୀୟ ବିରଳ ମୃତ୍ତିକା ଲିମିଟେଡ

ମାଟିଖାଲ, ଛତ୍ରପୁର, ଗଞ୍ଜାମ

ଓଡ଼ିଶା, ୭୬୧୦୪୫

ଇମେଲ୍ - ramakantadash@yahoo.com



# ଅଶରୀରି ପ୍ରିୟତମା



ସୁବ୍ରତ ସାହୁ

ବଲାଙ୍ଗୀରର ସେହି ଲାଲ ସରୁଆ ରାସ୍ତାର ସବୁ ଖାଲଢ଼ିପକୁ ଅତିକ୍ରମ କରି ଗର୍ଜନର ସହ ଆଗକୁ ମାଡ଼ି ଚାଲିଥାଏ ମୋର ସେହି ପୁରୁଣା ଜିପ୍ । ଅପରାହ୍ନ ସମୟ ! ସୁପ୍ତ ପରିବେଶର ସେହି ଉତ୍ତପ୍ତ ବାୟୁମଣ୍ଡଳରେ ଅତିକ୍ରମ କଲାବେଳେ ଶରୀରର କୋଣ ଅନୁକୋଣରେ କିଛି ଗୋଟେ ଫୁଟିଲା ଜଳପରି ଅନୁଭବ ହେଉଥାଏ । ବୋଧହୁଏ ମନଭିତରେ ଜିଜ୍ଞାସା ଆଉ ଉତ୍କଣ୍ଠାର ଢେଉ ଲହଡ଼ି ଭାଙ୍ଗୁଥାଏ । ରାସ୍ତା ପାର୍ଶ୍ୱରେ ଥିଲା କେତେକ ଦ୍ରୁମ ଆଉ ମହାଦ୍ରୁମ ଯାହାକୁ ମୁଁ ଚାରିବର୍ଷ ତଳେ ବିଦାୟ ଦେଇ ବଲାଙ୍ଗୀର ଛାଡ଼ି ଚାଲିଯାଇଥିଲି ସେମାନେ ପୁଣି ସ୍ୱାଗତ କରୁଛନ୍ତି କି ଅଭିମାନ କରୁଛନ୍ତି ମୁଁ ଠିକ୍ ଭାବରେ କଳ୍ପନା କରିପାରୁନଥିଲି । ଗରମ ଓ ଖରା ଯୋଗୁଁ ଝାଳରେ ଜିପର ଷ୍ଟିୟରିଂ ଓଦା ଓଦା ଲାଗୁଥାଏ । ଦେହର କପଡ଼ା ମଧ୍ୟ ଝାଳରେ ଭିଜି ଯାଇଥାଏ, ଆଉ ପୁଣି ଧୂଳିକଣା ମାନଙ୍କ ଆସରରେ କେମିତି ଗୋଟେ ଲାଲ ରଙ୍ଗର ବଳୟ ମୁଁ ନିଜ ଶରୀର ଆଉ କଳାପ୍ୟାଣ୍ଟ ଓ ଜୋତାରେ ସ୍ପଷ୍ଟ ଦେଖିପାରୁଥାଏ । ଅପେକ୍ଷାରେ ଥାଏ କେବେ ନିଜ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବି ।

କେତେକ ବଙ୍କାଣୀ ଓ ଉଚ୍ଚନୀଚ ସଡ଼କକୁ ପଛରେ ପକାଇ ଜିପ୍‌ଟି ଯାଇ ଅଟକିଗଲା ଗୋଟିଏ ନିଛାଟିଆ ଡାକବଙ୍ଗଳା ଆଗରେ । ଏତେ ଗର୍ଜନ ପରେ ଜିପଟି ଲକ୍ଷ୍ୟସ୍ଥଳରେ ପହଞ୍ଚି ଦୀର୍ଘନିଶ୍ୱାସ ମାରିଥିଲା । ଜିପରୁ ଓହ୍ଲାଇ ଆଗ ଥରେ ଆଖି ପୁରାଇ ଦେଖିଲି ସେ ବିଶାଳ ଦାନବ ପରି ଛିଡ଼ା ହୋଇଥିବା ଅଟ୍ଟାଳିକାକୁ, କିଛି ବଦଳିନି ପରି ଲାଗିଲା । କୁହାଯାଏ କୁଆଡ଼େ ଏହି ଡାକ ବଙ୍ଗଳାକୁ ଇଂରେଜମାନେ ତାଙ୍କ ରାଜୁତି ସମୟରେ ବନେଇଥିଲେ । ଏହି ଡାକବଙ୍ଗଳା ଥିଲା ଅତିଥିମାନଙ୍କର ଆମୋଦ ପ୍ରମୋଦର ଆଡ୍ଡା । କୁଳୁକୁଳୁ ଶବ୍ଦରେ କାନଟି ପୁରି ଉଠୁଥାଏ ଯେପରି କେଉଁ ଛୋଟ ପିଲାର କାନ୍ଦ । ଏହି ଶବ୍ଦ ସେ ଝରଣାର ଯାହା ଏହି ଡାକବଙ୍ଗଳା ପଛପଟେ ନିଜକୁ କାହିଁ କେଉଁକାଳରୁ



ଅବସ୍ଥିତ କରାଇ ନେଇଛି । ପାହାଡ଼ ଘେରାରେ ଏ ଡାକବଙ୍ଗଳା, ସମୁଦ୍ର ମଝିରେ ଏକ ରହସ୍ୟ ଦ୍ୱୀପପରି ପ୍ରତୀତ ହେଉଥାଏ । କାଠର ଝରକା ସବୁ ବନ୍ଦ, କେଉଁ କାଳରୁ ଖୋଲା ହୋଇଛି କି ନାହିଁ କେଜାଣି । ଉପର ମହଲାର ଦୁଇଟି ଝରକା ଭାଙ୍ଗି ଯାଇଥିଲା ଆଜଯାଏ କେହି ସଜାଡ଼ି ନାହାନ୍ତି, ସେମିତି ଭଗ୍ନ ଅବସ୍ଥାରେ ଅଛି । ଛାତ ଉପରୁ ମରୁଭୂମିର ଥୁଣ୍ଟା ଗଛପରି ଗୋଟିଏ ଟିଭି ଆଣ୍ଟେନା ମୁଣ୍ଡ ଟେକିଥାଏ ଯାହା ଅକାମୀ ସେବେଠୁ । ନାଲିକାଛରେ ଶିଉଳୀର ଚିହ୍ନ ବେଶ ମଡ଼ର୍ଣ୍ଣ ଆର୍ଟ୍ ପରି ଦିଶୁଥାଏ । କେତେ ପ୍ରକାରର ପଶୁପକ୍ଷୀ ଚିତ୍ରିତ ହେଲାପରି ଦିଶୁଥାଏ ।

ନଜର ଆଖିକୁ ଆୟତକୁ ଆଣି ଲୁହାର ଫାଟକକୁ ଧକ୍କା ଦେଇ ହତା ଭିତରକୁ ପଶିଗଲି । ଫାଟକର ଆର୍ତ୍ତନାଦରେ ପାଖ ବରଗଛରୁ ସବୁ ପକ୍ଷୀ ଉଡ଼ିଗଲେ । ହତାଭିତରେ କିଛି ଫୁଲଗଛ ଲାଗିଛି ଆଉ ବାହାରେ ଥିବା ବରଗଛଟି ପାଚେରି ଫଟେଇ ତାର ଚେର ସବୁକୁ ପ୍ରସାରିତ କରିଛି । ଆଉ ଛୋଟ ଛୋଟ ଘାସର ଗାଲିଚା ସବୁ ସତେ ଯେପରି ମୋ ପାଦର ବାସ୍ନାରୁ ମୋତେ ଚିହ୍ନିନେଇ ସ୍ୱାଗତ କରୁଛନ୍ତି । ଦୁଆର ମୁହଁ ଆଡ଼କୁ ଆଗେଇଲି । ଗୋଟିଏ ପୁରୁଣା ବାଇଶି ଇଞ୍ଚିଆ ସାଇକେଲଟେ ଥୁଆ ହୋଇଛି । ଏହା ବୋଧହୁଏ ଶିବୁ ଦାଦାଙ୍କର । ଶିବୁ ଦାଦାଙ୍କ କଥା ଭାବୁ ଭାବୁ ସେହି ହସ ହସ ବୃଦ୍ଧ ଚେହେରା ବାରିପଟୁ ମୋ ଆଡ଼କୁ ମାଡି ଆସୁଥିବାର ଦେଖାଗଲା । ମୋ ଜପ୍ ଶବ୍ଦ ଶୁଣି ବୋଧେ କାମ ଛାଡ଼ି ଆସିଛନ୍ତି । ଧୋତି ସାଙ୍ଗକୁ ନୀଳରଙ୍ଗର କୁରୁତା ଆଜିବି ପିନ୍ଧିଛନ୍ତି ଯାହା ମୁଁ ଚାରିବର୍ଷ ତଳେ ଗଲାବେଳେ ତାଙ୍କୁ ଉପହାର ଦେଇଥିଲି । ବୃଦ୍ଧ ଅବସ୍ଥାରେ ମଧ୍ୟ ଯୁବକ ଭଳି ଅଣ୍ଟା ସଳଖ ଆଜି ବି ଚାଲୁଛନ୍ତି । ନଇଁପଡ଼ି ତାଙ୍କ ପାଦଧୁଳି ନେଲି । ସେ ମୋ ହାତ ଧରି ଉଠେଇନେଲେ ଓ ମୁଣ୍ଡରେ ହାତମାରି କହିଲେ, "ତୁମେ ସବୁବେଳେ ଖୁସିରେ ରୁହ ଚନ୍ଦନ ବାବୁ । ଆଉ ଖିଆପିଆ ଠିକ୍ ଠାକ୍ କରୁନ ବୋଧେ, ପୁରା ଝଡ଼ିଗଲଣି, ଖାଲି ସେ ଲୁହାଖଣି କାମରେ ମାତିଲ । ଆଉ ତରସ୍ତା ବର୍ଷ ଯାହା ହେଲା ମୁଁ ଶୁଣିକି ରହିପାରିଲିନି । ବୀଣା ମା' ଗଲାପରେ ଆପଣଙ୍କ ଯତ୍ନ ଆଉ କିଏ ବା ନେଉଥିବ ? ବୀଣା ମା ବହୁତ ଭଲ ମଣିଷ ଥିଲେ । ହେଲେ ଦଇବ କଣ ଭଲ ମଣିଷଙ୍କୁ ଏ ଧରାରେ ଅଧିକ ସମୟ ରଖିବ ?"

ଏ କଥା ସହ ଶିବୁଦାଦାଙ୍କ ଆଖି ଛଳ ଛଳ ହୋଇ ଉଠିଥିଲା ଓ ସେ ତାଙ୍କ ପୁରୁଣା ନାରଙ୍ଗୀ ରଙ୍ଗ ଗାମୁଛାରେ ଲୁହ ପୋଛିବାକୁ ଲାଗିଲେ । ତାଙ୍କ ମୁହଁରୁ ସେ ବୀଣା ନାଁଟି ଶୁଣି, ମୋ ହୃଦୟ ଭିତରେ ଆଲୋଡ଼ନ ସୃଷ୍ଟି କରିସାରିଥିଲା । ତିନିବର୍ଷ ତଳେ ଦବି ଯାଇଥିବା କୋହର ପୋଖରୀରେ କିଏ ଜଣେ ଯେମିତି ପଥରଟିଏ ପକାଇ ତରଙ୍ଗ ସୃଷ୍ଟି କରିଦେଲା ।





ବୀଣା ମୋ ସ୍ତ୍ରୀ ଯେ ତିନିବର୍ଷ ତଳେ ଆମ ସମସ୍ତଙ୍କୁ ଛାଡ଼ି ଚାଲିଯାଇଥିଲା କର୍କଟ ରୋଗରେ । ତାର ସେହି ହସ ହସ ମୁହଁ ଆଉ ଛୋଟ ପିଲାଭଳି କଥା ଆଜିବି ମୁଁ ମୋର ହୃଦୟରେ ସାଇତି ରଖିଛି । ଆମେ ଦୁଇଜଣ ଚାରିବର୍ଷ ତଳେ ଖରାଛୁଟିରେ ଏହି ଡାକବଙ୍ଗଳାରେ ରହିଥିଲୁ । ସେ ସାତଦିନର ଅଭୁଲା ସ୍ମୃତି, ପ୍ରେମ, ରାଗରୋଷ, ଆଉ ମନେଇବା ଏହି ଡାକବଙ୍ଗଳାର ପ୍ରତିଟି କୋଣ ଅନୁକୋଣରେ ପ୍ରତିଧ୍ୱନିତ ହେଲାପରି ମନେ ହେଉଛି । ବଲାଣିରୁ ଫେରିବା ପରେ ବୀଣାର ଦେହ ଖରାପ ହୋଇ ଯାଇଥିଲା ଓ ତା ପରେ ସେ ଅସୁସ୍ଥତାର ଚୋରାବାଲିରେ ବୁଡ଼ି ଚାଲିଲା ଓ ଶେଷରେ ଆମ ସମସ୍ତଙ୍କୁ ବିଦାୟ ଦେଇ ଆରପାରିକୁ ଚାଲିଗଲା । ଶିବୁଦାଦା ଜିପରୁ ମୋର ବ୍ୟାଗ ଆଉ ଜିନିଷ ଆଣି ଦୁଆରର ତାଲା ଖୋଲି ଭିତରକୁ ଗଲେ । ମୁଁ ବି ଅନୁସରଣ କଲି । ସେ ବିଶାଳ କବାଟ ଶାଳ କାଠରେ ତିଆରି ବୋଲି ଶିବୁଦାଦା କୁହନ୍ତି । ବହୁତ ପୁରୁଣା ଆଉ କେତେ ସମୟର କାର୍ଯ୍ୟକଳାପର ସାକ୍ଷୀ । ପୂର୍ବଥର ଏହି ଦୁଆରରେ ବୀଣା ଆଉ ମୁଁ ହାତ ଧରାଧରି ହୋଇ ପ୍ରବେଶ କରିଥିଲୁ ଡାକବଙ୍ଗଳାରେ ଆଜି କିନ୍ତୁ ମୁଁ ଏକା, ସାଥିବିହୀନ । ସେହି ପୁରୁଣା ବିଶାଳ ଶିଡ଼ିରେ ଚଢ଼ି ଉପର ମହଲାରେ ପହଞ୍ଚିଗଲି । ଶିବୁଦାଦା ମୁଁ ଆସିବାର ଖବର ପାଇ ସେହି କଣ ରୁମଟା ସଫାସୁତରା କରିଦେଇଥାନ୍ତି । ମୋତେ ଭାରି ଭଲଲାଗେ ସେହି ବଖରାଟା । ପଛ ଝରକାରେ ଝରଣା ଦେଖାଯାଏ ଆଉ ଜଙ୍ଗଲ ବି । ସେଥିପାଇଁ ପୂର୍ବଥର ମଧ୍ୟ ବୀଣା ଆଉ ମୁଁ ଏଇ ବଖରାରେ ରହିଥିଲୁ ।

“ଶିବୁଦାଦା ମୁଁ କାଲି ସକାଳୁ ପୁଣି ବାହାରିଯିବି କଟକ, ମୋର ବହୁତ କାମ ରହିଗଲାଣି ।” କୋଠରୀର ନୀରବତାକୁ ଭାଙ୍ଗି ମୁଁ କହିଲି । “କଣ ଚନ୍ଦନବାବୁ, ଏତେଦିନ ପରେ ? ତିନି ଚାରିଦିନ ରହିକି ବୁଲାବୁଲି କରି ଯିବେ ।” ସେ ପଟୁ ଉତ୍ତର ଆସିଲା । “ନାଇଁ, ଶିବୁଦାଦା, ଖାଲି ଇଞ୍ଜିନିୟରଙ୍କ ସହ କଥା ହେଇ କାମ ଆରମ୍ଭ ହେବାର ଥିଲା ତ ମୁଁ ଆସିଲି, ନହେଲେ ବଲାଣି ଲୁହାଖଣି କଥାତ ସାମଲବାବୁ ବୁଝନ୍ତି ।” ମୁଁ କହିଲି ।

“ହଉ, ଚନ୍ଦନବାବୁ । ମୁଁ ଆଜି ରାତି ଟିକେ ଘରେ ରହିବି, ମୋ ନାତୁଣୀ ଦେହ ଭଲନାହିଁ । ଆଉ ରାତି ପାଇଁ ଖାଇବା ପିଇବା ବ୍ୟବସ୍ଥା କରିଦେଇଛି । ଦରକାରୀ ଜିନିଷ ସବୁ ଏଇ ବଖରାରେ ରଖି ଦେଇଛି । ଆଉ, ହଁ ପାଖ ଗାଁରେ ବିଜୁଳି ଖୁଣ୍ଟି ଭାଙ୍ଗିଯାଇଛି, ଦୁଇ ତିନିଦିନ ଯାଏଁ ବିଜୁଳି ଆସିବନି ତ ଟେବୁଲ୍ ଉପରେ ମହମବତୀ ଆଉ ଦିଆସିଲି ରଖିଦେଇଛି, ଲଣ୍ଠନ ବି ଜାଳିଦେଇଛି । ମୁଁ କାଲି ଭୋରରୁ ଆସି ପହଞ୍ଚିଯିବି ।” ଶିବୁ ଦାଦା କହିଲେ । ମୁଁ ହଁ ଭରିଲି । ଶିବୁ ଦାଦା ଶିଡ଼ିରେ ଓହ୍ଲେଇ ତଳକୁ ଚାଲିଗଲେ । ପୁଣି ଚାରିଆଡ଼େ ନୀରବ ଓ ନିସ୍ତବ୍ଧ । ମୁଁ ଯାଇ





ପଛ ପଟ ଝରକା ଖୋଲଦେଲ । ସେଇ ପୁରୁଣା ଲମ୍ବା ଚୌକି ଉପରେ ବସିଲ ।

ଅସ୍ତଗାମୀ ସୂର୍ଯ୍ୟର ସେହ ସୁନେଲ କରଣରେ ବଖଗ୍ଟି ଆଲୋକତ ହୋଇ ଉଠିଲା । ପକ୍ଷୀମାନେ ସେହ ଅସ୍ତଗାମୀ ସୂର୍ଯ୍ୟର ବଚ୍ଛୁରିତ କରଣକୁ ସାମ୍ନାକର ଜଙ୍ଗଲ ଆଡ଼କୁ ଉଡ଼ି ଯାଉଥାନ୍ତି । ଆଉଥରେ କୋଠରୀକୁ ନରୀକ୍ଷଣ କର ଦେଖିଲ । ଗୋଟିଏ କୋଣରେ ପାଣି ଭର୍ତ୍ତି କାଚ ସୁରେଇ ଓ ଗ୍ଲାସ । ଆଉ ଏକ କୋଣରେ ଗୋଟିଏ ଟେବୁଲ୍ ଓ ଚଉକ । କୋଠର ମଝିରେ ପଲଙ୍କ ଓ ତା ଉପରେ ଉଚା ନରମ ଗଦ । ଖଟ ପାଖକୁ ଲାଗି ସେହ ପୁରୁଣା ଆଲମିରା । ପୂର୍ବଥର ଏହ କୋଠରୀରେ କେତେ ଖିଲ ଖିଲ ହସ, ମହା କଥାରେ ପରପୂରତ ହୋଇଯାଇଥିଲା । ଆଜ ପୁରା ଶୂନଶାନ । ସେ ହସ ଖୁସି ସବୁ ସତେ ଯେପର ମୋ ଉପରେ ଅଭମାନ କର ଡାକବଙ୍ଗଳା ଛାଡ଼ି ଅନନ୍ତ ଅସରନ୍ତ ଜଙ୍ଗଲକୁ ପଳାଇଛନ୍ତି । ମୁଁ ଦୀର୍ଘନଃଶ୍ୱାସ ମାର ଉଠିଲ । କ୍ଲାନ୍ତ ମେଣ୍ଟାଇବାକୁ ଯାଇ ଧୁଆଧୋଇ ହୋଇ ଆସି ଟିକେ ପାଣି ପିଇ ପଲଙ୍କ ଉପରେ ବସିଲ । ଧିରେ ଧିରେ ଅନ୍ଧକାର ଗ୍ରାସ ଆଡ଼େ ଆଚ୍ଛାଦତ ହୋଇଗଲା । ଉଠିଲ, ଟେବୁଲ ଉପରେ ଥିବା ମହମବତୀ ଜଳାଇଦେଲ । ବ୍ୟାଗରୁ ଉପନ୍ୟାସଟିଏ କାଢ଼ି ପଢ଼ିଲ । ଇଚ୍ଛା ହେଲାନ । କଛ ସମୟପରେ ଶିଡ଼ିରେ ତଳକୁ ଗଲ । ହଲରେ ଦୁଇଟା ଲଣ୍ଠନ ଜଳୁଥାଏ, ଯାହା ସେ ବଡ଼ ହଲର ଅନ୍ଧାରକୁ ଦୂରେଇବାକୁ ଅସମର୍ଥ ତଥାପି ଚେଷ୍ଟାରତ ପର ଲାଗୁଥାନ୍ତି । ଗୋଟିଏ ଲଣ୍ଠନ ନେଇ ରୋଷେଇ ଘରକୁ ଗଲ । ଶିବୁଦାଦା କ୍ଷୀର ଆଉ ପାଉଁରୁଟି ରଖିଥିଲେ । କ୍ଷୀର ପିଇଦେଇ ଉପରକୁ ଫେର ଆସିଲ । ସମୟ ଦେଖିଲ ନ'ଟା ବାଜଛ । ଟେବୁଲ ପାଖକୁ ଯାଇ କଛ କାଗଜପତ୍ର କାମ କରବାକୁ ଲାଗିଲ । ପଛପଟ ଝରକା ଖୋଲାଥିବାରୁ ଜଙ୍ଗଲ ଆଡୁ ଝରକାକୁ ସ୍ପର୍ଶ କର ଥଣ୍ଡା ପବନ ବହୁଥାଏ । ସତେ ଯେପର ମୋକାନରେ କଛ କହବାକୁ ଚେଷ୍ଟା କରୁଥାଏ । କେତେ ସମୟ ବତଗଲା ଜାଣିନ । ଚଉକରୁ ଉଠିଲ, କାଗଜପତ୍ର ଗୁଡ଼ିକ ବ୍ୟାଗରେ ରଖି ପଲଙ୍କ ଉପରକୁ ଶୋଇବାକୁ ଆସିଲ । ଶୋଇବାକୁ ମିଥ୍ୟା ପ୍ରୟାସ କରବାକୁ ଲାଗିଲ କନ୍ତୁ ନଦ ଲାଗିଲାନ । ଆଖି ଆଗରେ ନାଚ ଉଠିଲା ବୀଣା ସହ ବତେଇଥିବା ଅନ୍ତରଙ୍ଗ ମୁହୂର୍ତ୍ତସବୁ । ସେହ ହାତ ଧରାଧର ହୋଇ ପାହାଚ ଚଢ଼ିବା । ଝରଣାରେ ପାଣି ଫୋପଡ଼ା ଫୋପଡ଼ି ହେବା । ଆଉ ସକାଳୁ ସକାଳୁ ମୋ ସହତ ଲାଗି ଲାଗି ମୋତେ ଉଠେଇବା । ଆଉ ମୁଁ ରାଗିକ କଛ କହଦେଲେ ଅଭମାନ କର ରଷିବା । ଆଉ ମନେଇବା ପରେ ସେ ପ୍ରେମଭରା ଆଲଙ୍ଗନରେ ଜାବୁଡ଼ି ଧରବା । ଏହ କୋଠରୀରେ ତା କୋଳରେ ମୁଣ୍ଡଦେଇ ଶୋଇଥିଲ ଆଉ ସେହ କେଶର ସବୁଜମାରେ ହଜଯାଇ ଆଖିରେ ଆଖି ମିଶାଇ ଦାମ୍ପତ୍ୟ ଜୀବନର ସେ କଥୋପକଥନ ଅବସ୍ମରଣୀୟ । ତା ଦେହର



ବାସ୍ନା, ଆଉ କେଶର ବାସ୍ନା, ତା ନରମ ପାପୁଲିର ସ୍ପର୍ଶ ମୋର ଶରୀରର ପ୍ରତ୍ୟେକ ସ୍ନାୟୁ ମଧ୍ୟରେ ଆଜି ବି ଜୀବିତ । ମୋର ମନେ ଅଛି ମେଡ଼ିକାଲରେ ତା ସହ ଶେଷ କଥା । ସେ କହିଥିଲା, "ତୁମେ ମନ ଦୁଃଖ କରିବନି । ନିଜର ଯତ୍ନ ନେବ । ସବୁବେଳେ ଖୁସିରେ ରହିବ । ଆଉ ଥରେ ବାହା ହେଇଯିବ । ଏକା ରହିବନି । ତମ ଯତ୍ନ କିଏ ନେବ ? ଆଉ ମୁଁ ସବୁବେଳେ ତୁମ ସାଙ୍ଗରେ ଥିବି । ମୃତ୍ୟୁପରେ ବି ତୁମକୁ ଦେଖୁଥିବି ।" ହେଲେ କାହିଁ ସେ ମୋ ସାଙ୍ଗରେ ଆଜି ନାହିଁ ।

ହଠାତ୍ କିଏ ଜଣେ ଫୁଙ୍କିଦେବାପରି ପବନରେ ମହମବତୀଟି ଲିଭିଗଲା । ବଖରାଟି ଅନ୍ଧକାରରେ ପରିପୂର୍ଣ୍ଣ ହୋଇଗଲା । ଝରଣାରେ କୁଳୁକୁଳୁ ଶବ୍ଦ, ଜଙ୍ଗଲର କିଛି ପଶୁପକ୍ଷୀଙ୍କ ଚିରିର ଚିରିର ଶବ୍ଦ ବ୍ୟତୀତ ପବନରେ ପରଦାର ଫଡ଼ ଫଡ଼ ହେବାର ଶବ୍ଦ କାନ ଅନୁଭବ କରୁଥିଲା । ମୋବାଇଲ୍ ଦେଖିଲି ସମୟ ଏଗାରଟା ବାଜି ଚାଳିଶି ମିନିଟ୍ । ଶୋଇବାକୁ ଜବରଦସ୍ତି ଚେଷ୍ଟା କଲି । କିଛି ଶବ୍ଦ ଶୁଣି ପଲଙ୍କରୁ ଉଠି ବସିଲି । ଯେପରି ଝରକାର ପରଦାକୁ ଭେଦକରି କାହାର ସ୍ୱର ମୋ କାନକୁ ସ୍ପର୍ଶ କଲା, "ଚନ୍ଦନ, ଏଠିକି ଆସ । ଦେଖ ଚନ୍ଦନ ।" ବୀଣାର ସ୍ୱରପରି ଲାଗିଲା । ବିଶ୍ୱାସହୀନ ଉତ୍କଣ୍ଠାର ସହ ପଲଙ୍କରୁ ଉଠି ଆଖି ମଳି ଝରକା ପାଖକୁ ଗଲି । ଚାରିଆଡ଼େ କୁହୁଡ଼ି କୁହୁଡ଼ି ଦେଖାଯାଉଥାଏ । ତଥାପି କୁହୁଡ଼ିକୁ ଚିରି ବୀଣାର ସ୍ୱର ଡାକି ଚାଲିଥାଏ । ମୁଁ ସାଲ ଗୋଟେ ଘୋଡ଼େଇ ହୋଇ ଟର୍ଚ୍ଚଧରି ଶିଡ଼ିରୁ ଓହ୍ଲେଇ ଆସିଲି ତଳକୁ । ବାରପଟ କବାଟ ଖୋଲି ଝରଣା ଆଡ଼କୁ ଅଗ୍ରସର ହେଲି । କିନ୍ତୁ ଆଉ ଶବ୍ଦ ଶୁଭିଲାନି । ପୁଣି ଚାରିଆଡ଼େ ନିସ୍ତବ୍ଧ । କିନ୍ତୁ ମୁଁ କିଛି କ୍ଷଣପାଇଁ ଅନୁଭବ କଲି ବୀଣା ମୋ ପାଖକୁ ଫେରି ଆସିଛି । ସବୁ କ୍ଲାନ୍ତିକୁ ପାଶୋରି ଉତ୍କଣ୍ଠା ଓ ଉତ୍ସାହର ସହ ଆଗେଇ ଗଲି ପଥର ରାସ୍ତାରେ । ଚାରିବର୍ଷ ପରେ ବିଲ୍ଣିର ଏହି ନିସ୍ତବ୍ଧ ଅଞ୍ଚଳରେ କ'ଣ ପୁଣି ମୋର ପ୍ରିୟତମାକୁ ଦେଖିପାରିବି ? ତା'ର ସ୍ପର୍ଶ ଅନୁଭବ କରିପାରିବି ? ଏହା ଭାବି ଅଜଣା ଦୁନିଆରେ ପ୍ରବେଶ କଲାପରି ଆଗେଇ ଚାଲିଲି । ମୁଁ କେମିତି ଏଇ ତିନିବର୍ଷ କାଟିଛି ମୁଁ ଜାଣିଛି । ସେ ମୋର ନିତି ଦିନର ଆବଶ୍ୟକତା ହେଲେ ମଧ୍ୟ ତା ବିନା ରହିଛି । ସେ ବି ମୋତେ ଝୁରି ଝୁରି ଫେରି ଆସିଛି ବୋଧହୁଏ । ଥରୁଟିଏ ତାକୁ ଆଖିପୁରେଇ ଦେଖିବି । ଏମିତି ପାଗଳ ଭଳି କେତେ ସ୍ୱପ୍ନ ଆଉ ଆଶାର ଗୁଚ୍ଛକୁ ମନରେ ଧରି ଝରଣା ପାଖରେ ପହଞ୍ଚିଗଲି । ଟର୍ଚ୍ଚ ମାରି ଚାରିଆଡ଼େ ଦେଖିଲି, କାହିଁ କେହି କେଉଁଠି ବି ତ ନାହାନ୍ତି । ନିରାଶ ହୋଇ ସେହି ପଥର ଚଟାଣ ଉପରେ ବସିପଡ଼ିଲି । ଆଖିରେ ଆଶା ଗୋଟିଏ ଦର୍ଶନ ପାଇଁ, ହେଲେ ସେ ତ ଦୁନିଆରେ ନାହିଁ କେମିତି ଆସିବ । ହେଲେ ସେ ଡାକ, ତା ସ୍ୱର ତ



ମିଛ ନୁହେଁ । ଏମିତି ଭାବି ଭାବି ଟର୍ଚ୍ଚ ବନ୍ଦକରିଦେଇ ସେଇ ଛୋଟ ପିଲାର ମୁହଁପରି ଦିଶୁଥିବା ଚନ୍ଦ୍ରମାକୁ ଚାହିଁଲି । ଭାବିଲି ମୁଁ ବି ତାପରି ଏକା ହୋଇଯାଇଛି ଏ ସାରା ସୌରମଣ୍ଡଳରେ । ଏମିତି ଭାବି ଭାବି ତଳକୁ ମୁହଁକରି ବସିପଡ଼ିଲି ।

ହଠାତ୍ ଝରଣା ସେପାଖକୁ ଅନାଇ ଦେଖିଲି କେହି ଜଣେ ଦଣ୍ଡାୟମାନ । କୁହୁଡ଼ିରୁ ସ୍ପଷ୍ଟ ଦେଖିବାକୁ ଚେଷ୍ଟା କଲି । ସେହି ଚହ୍ଲା ହସ ହସ ମୁହଁରେ ସ୍ମିତହାସ୍ୟ ଦେଇ ଛିଡ଼ା ହୋଇଛି ବୀଣା । ହାତଠାରି ମୋତେ ଡାକିଲା । ମୋ ହାତରୁ ଟର୍ଚ୍ଚଟା ତଳେ ଖସିପଡ଼ିଲା । ମନ ଭିତରେ ଖୁସି ଓ ଆଶାର ଆଲୋକ ପ୍ରତିଫଳିତ ହୋଇଗଲା ଯେପରି ମୁଁ ତାକୁ ପ୍ରଥମ ଥର ଦେଖି ଖୁଶି ହୋଇଥିଲି ରେଭେନ୍‌ସା କଲେଜ୍ ଲନ୍ ପାଖରେ । ମୁଁ ସେଇ ଝରଣାର ଆଣ୍ଠୁଏ ପାଣିରେ ପାଦ ବୁଡ଼ାଇ ଆଗକୁ ବଢ଼ିଲି । ସେହି ଥଣ୍ଡା ପାଣିର ସୁଅ ଯେପରି ମୋ ଦୁନିଆ ଆଉ ତା ଦୁନିଆର ସୀମା ଯାହାକୁ ଲଙ୍ଘି ମୁଁ ଆଜି ତା ପାଖକୁ ଯାଉଛି ସମସ୍ତଙ୍କୁ ପରିକରି, ସେପାଖରେ ପହଞ୍ଚିଯାଇ ତାକୁ ଖୋଜିଲି । ଦେଖିଲି ସେ ମୋ ଆଗରେ ଜଙ୍ଗଲ ଆଡ଼କୁ ମୁହଁକରି ଆଗେଇ ଚାଲିଛି । ଚନ୍ଦ୍ରକିରଣରେ ତାର ଟିକେ ସ୍ପର୍ଶପାଇଁ ଛୋଟ ପିଲାଭଳି ତା ପଛେ ପଛେ କାନ୍ଦି କାନ୍ଦି ଚାଲିଲି, ଡାକିଲି 'ବୀଣା' । ସେ ରହିଗଲା । ତା ପାଖକୁ ଯାଇ ତା ହାତକୁ ସ୍ପର୍ଶକଲି ଯେପରି ଦେହରେ ଗୋଟିଏ ଅଲଗା ପ୍ରକାର ଶିହରଣ ଖେଳିଗଲା । ଗୋଟିଏ ଗଛତଳେ ଘାସ ଉପରେ ବସିଲୁ । ମୁଁ ପଚାରିଲି, "କେମିତି ଅଛ ?" କେମିତି ଗୋଟିଏ ଅଚହ୍ଲା ଲୋକଙ୍କୁ ପଚାରିବା ଭଳି । ସେ ଆଗ ହସିଦେଲା ଆଉ କହିଲା, "ଭଲରେ ନାହିଁ । ତମକୁ ଛାଡ଼ି କେମିତି ଭଲରେ ରହିବି ଯେ ? ତା ଆଖିର ସେ ନିରୀହତା ଆଜିବି ମୋତେ କରୁଣ ଚାହାଣୀରେ ଦେଖୁଥିଲା । ତା କୋଳରେ ମୁଣ୍ଡଦେଇ ଶୋଇଗଲି । ସେ ତାର ସେହି କୋମଳ ପାପୁଲିରେ ମୋ ମଥାକୁ ଆଉଁସି ଦେଲା । ମୁଁ ଏବେବି ତା ଦେହର ଆଉ କେଶର ବାସ୍ନାକୁ ଅନୁଭବ କରିପାରୁଥାଏ । ସେ କହିଲା, "ତୁମେ ସବୁବେଳେ ଖୁସିରେ ଥାଅ । ମୁଁ ସବୁବେଳେ ତୁମ ସାଙ୍ଗରେ ଅଛି । ଏବେ ଶୋଇଯାଅ, ତୁମେ ବହୁତ ଥକିଯାଇଛ ।" ମୋ ଆଖିରୁ ଦୁଇଟୋପା ଲୁହ ଝରିଗଲା । ଖୁସିରେ କି ଦୁଃଖରେ ଜାଣିପାରିଲି ନାହିଁ । ସେ ମୋ ଆଖିରୁ ଲୁହ ପୋଛିଦେଲା । ଧିରେ ଧିରେ ମୁଁ ତା କୋଳରେ ଲୀନ ହେବାକୁ ଲାଗିଲି । ନିଜ ଦୁନିଆରୁ ବହୁ ଦୂରରେ କେଉଁ ପରୀ କୋଳରେ ଶୋଇଥିବା ପରି ଲାଗୁଥିଲା । ଅନ୍ଧକାରରେ ସେ କୋମଳ ଶେଯ ଭିତରେ କେତେବେଳେ ହଜିଗଲି ଜାଣିନି ।

ଗରମ ହାତର ପାପୁଲି ସ୍ପର୍ଶରେ ମୋ ନିଦ ଭାଙ୍ଗିଗଲା । ଉଠିବସିଲି, ସକାଳର ସୂର୍ଯ୍ୟ କିରଣ ସହି ଆଖିକୁ ଖାପ ଖୁଆଇବାକୁ କିଛି ସମୟ ଲାଗିଲା । ପକ୍ଷୀମାନେ ଗଛ ଡାଳରୁ ଆର୍ତ୍ତନାଦ

ଦେଉଥାନ୍ତ । ଦେଖିଲ ଚନ୍ତାପୂର୍ଣ୍ଣ ମୁଖରେ ଛିଡ଼ା ହୋଇଛନ୍ତ ଶିବୁଦାଦା । "ଏ କଣ ଚନ୍ଦନବାବୁ ? ତମେ ଏ ଝରଣା ପାଖରେ ଗଛମୂଳେ ଶୋଇଛ ଯେ ? ମୁଁ ତମକୁ କେତେ ଆଡ଼େ ଖୋଜ ଆସିଲଣି । କଣ ରାତରେ କଛ ଅସୁବଧା ହେଲା କ ? ଅନ୍ଧାରରେ ଏତେ ବାଟ ଆସିଲ କେମିତ ? ତମର ଯଦ କଛ ହୋଇଯାଇଥାନ୍ତା ? ହେ ଭଗବାନ..." ସେ କରୁଣ ସ୍ୱରରେ କହଲେ । "ନାଇଁ ଶିବୁଦାଦା, ବୀଣା..." ମୁଁ ଅଟକଗଲ । "କଣ, ବୀଣା ମା ?" ସେ ପଚାରଲେ । ମୁଁ କହଲ, "କଛ ନାହିଁ, ଚାଲ ଯିବା । ନଜ ସାଲଟିକୁ ଉଠାଇ ଚାଲବାକୁ ଲାଗିଲ । ଶିବୁଦାଦାଙ୍କୁ କଛ କହଲନ କାରଣ ସେ ବଶ୍ୱାସ କରବେ ନାହିଁ, କହବେ ତମେ ବୀଣା ମା'ଙ୍କୁ ଭୁଲ ପାରୁନ ବୋଲ ଏମିତ ଲାଗୁଥିବ । ହେଲେ ସତରେ କଣ ବୀଣା ଆସିଥିଲା ? ମୁଁ ନଜେ ବ ବଶ୍ୱାସ କରପାରୁନ । କନ୍ତୁ ଏବେ ବ ମୋ ସାର୍ଟରୁ ତା ଦେହର ବାସ୍ନା ଯାଇନଥିବା ପର ଲାଗୁଛ । ସେ ଆସିଥିଲା ? କାରଣ ମୋ ଭଲ ପାଇବା ଆଜ ବ ତାକୁ ଯେ କୌଣସି ଦୁନଆରୁ ଟାଣି ଆଣିବାକୁ ଯଥେଷ୍ଟ ଥିଲା ବୋଲ ମୁଁ ଭାବୁଥିଲ । ସବୁକାମ ସାରଦେଇ ପୁଣି ମୋ ଜପରେ ବସି କଟକ ଆଡ଼କୁ ମୁହାଁଇଲ । ବଲଣିର ସେହ ପ୍ରକୃତ ସମ୍ଭାରକୁ ବଦାୟ ଦେଇ ଯେଉଁମାନେ ମୋତେ ମୋ ପ୍ରିୟତମାର ସ୍ପର୍ଶ ପାଇବାରେ ସାହାଯ୍ୟ କରଥିଲେ । ହେଲେ ସେଦନ ରାତରେ ବୀଣା ସହ ଦେଖା ସତ କ ମିଛ ମୁଁ ଜାଣେନ । କନ୍ତୁ ସେ କୋମଳ ପାପୁଲର ଅମୀୟ ସ୍ପର୍ଶ ଏବେ ବ ମୋ ମଥାରେ ଅନୁଭବ କରପାରୁଥିଲ । ବୋଧହୁଏ ତାକୁ ମୁଁ ଆଉଥରେ ଭଲ ପାଇଯାଇଥିଲ ।


ଦ୍ୱତୀୟ ବର୍ଷ, ଭୂତତ୍ତ୍ୱ ବଜ୍ଞାନ ବଭାଗ

ମୁମ୍ବାଇ





# ନାରୀ ସର୍ବସଂହା !



ଜୟଶ୍ରୀ ଜେନା

ସେ ଯେବେ ସନ୍ତାନ ଆଗମନର ଖବର ଦଏ, ସେତେବେଳେ କେତେଜଣ ଖୁସି ହୁଅନ୍ତି, ଠିକ୍ ସେତକ ବରଶ ହୋଇଯାଆନ୍ତି, ଏଇଯା ଚନ୍ତା କର, ଯେ ଗର୍ଭସ୍ଥ ଶିଶୁଟି ପୁଅ ହୋଇଥିବ ନା ଝିଅ ? ଅବଶ୍ୟ ସେତକ ଜାଣିବାକୁ ଅଧିକ ପରଶ୍ରମ କରବାକୁ ପଡ଼େନାହିଁ, କେଇପୁଳା ଟଙ୍କା ବନମୟରେ ଜାଣିହୁଏ ସେ କଣ । ଆଉ ଯଦ ସେ ଝିଅଥାଏ, ତେବେ ତାକୁ ଅବଳମ୍ବେ ନଷ୍ଟ କରବା ସେମାନଙ୍କ ପାଇଁ କୌଣସି ଅପରାଧରେ ଗଣା ହୁଏନ । ଦୁନଆକୁ ଆସିବାପୂର୍ବରୁ ହିଁ ପ୍ରାଣଟିଏ ଝଡ଼ିପଡ଼େ ଗଛରୁ ପତ୍ରଟିଏ ପର । ପ୍ରତବାଦ କରବାର କୌଣସି ସୁଯୋଗ ପାଏନ । ତଥାପି ବେଳେ ବେଳେ ବଞ୍ଚିଯାଏ ଏମିତକା ଦୁର୍ଭାଗ୍ୟ ନେଇ ଜନ୍ମଥିବା ଝିଅଟିଏ, ମାର ଗର୍ଭରୁ ଧରତ୍ରୀରେ ପଦାର୍ପଣ କରେ ସତ, ହେଲେ କାହା ମନରେ ସ୍ଥାନ ଜମାଇ ପାରେନାହିଁ । ସହବାକୁ ହୁଏ ଆଜନ୍ମ ଅନ୍ୟମାନଙ୍କର ଘୃଣା ଓ ନର୍ଯାତନା ।

ଦନ ଗଡ଼ିଗଲେ, ଆଉ ଶିଶୁଟି ମଧ ବଢ଼ିଗଲେ । କଅଁଳ ମୁହଁରେ ହସ ଫୁଟେଇ ସମସ୍ତଙ୍କୁ ଖୁସି ଦେବାକୁ ଚେଷ୍ଟା କରେ । ହେଲେ ସମସ୍ତେ କଣ ସମାନ, ଏଠାରେ ପାଷାଣ ହୃଦୟ ଥିବା ଲୋକ ବ ମିଳନ୍ତ । ସେମାନେ ନଷ୍ପାପ ଶିଶୁଟିର ହସକୁ ବାରପାରନ୍ତ ନାହିଁ । କୁନ କୁନ ପାଦରେ ନୂପୁର ନାଇ ପ୍ରଥମ ପାଦ ପକାଏ ଶିଶୁ । ନୁଆ ଗୃଲ ଶିଖୁ ଶିଖୁ ଟଳମଳ ହୁଏ ଆଉ ଧରବାକୁ ଗୃହେଁ ବାପା କମ୍ବା ପରଜନଙ୍କ ହାତ । ହେଲେ ଏମିତ ବ ବାପା ଥାଆନ୍ତ, ଯେଉଁମାନେ ଏହ କୋମଳମତ ଶିଶୁର ଆଙ୍ଗୁଠିକୁ ଛୁଟିଦେଇ ଗୃଲଯାଆନ୍ତ । ସେମାନଙ୍କ ବ୍ୟବହାର ଏତେ ରୁକ୍ଷଥାଏ ମନେ ହୁଏ ସତେ ଯେମିତ ଜନ୍ମ ହୋଇଥିବା ଝିଅଟିର ଦେହରେ କେବଳ ମାଆର ରକ୍ତ ରହଛ । ସତେ ଯେମିତ ସେ କେବଳ ମାଆର ଝିଅ, ବାପାର.. କେହ ନୁହେଁ ।

ତା ଦରେଟି କଥା, ତା ଖିଲ୍ ଖିଲ୍ ହସ ଦେଖିବାକୁ କାହା ପାଖରେ ବା





ସମୟ ଥାଏ ସେଭଳ ଘରେ ? ସମୟ ସହ ତାଳ ଦେଇ ଶିଶୁଟି ବଡ଼ ହୋଇ ଶିକ୍ଷାର ଅଧିକାର ମାଗେ, ପ୍ରଥମକର ସ୍କୁଲ୍ ଯାଏ, ସେ ବ ବହୁ କଷ୍ଟରେ କ୍ଲାସ୍ ପରେ କ୍ଲାସ୍ ଉତ୍ତୀର୍ଣ୍ଣ ହୁଏ । ଭଇପର ତା ପାଇଁ ଟ୍ୟୁସନର ବ୍ୟବସ୍ଥା ହୁଏନାହିଁ । ନା, ସେ ପାଠପଢ଼ି କଣ କରବ ? ଝିଅ ଜନମ ତ ଚୁଲମୁଣ୍ଡକୁ !!! ସ୍କୁଲ୍ ସବୁଦନ ଯିବା କଣ ଆବଶ୍ୟକ, ଆଉ ଯଦ ସେ ସ୍କୁଲ ଯାଏ ଘରକାମ କରବ କଏ ? ଏବେ ଠୁ ଏ ସବୁ ନ ଶିଖିଲେ ଶାଶୁଶଶୁର କଣ କହବେ ?

ଆଜର ଏହ ଦୁନଆରେ ଅବୋଧ ଶିଶୁସିନା ବୁଝିପାରେନ ହେଲେ ତା ମାଆ ସଦାସର୍ବଦା ସଜାଗଥାଏ, ପଶୁ ପ୍ରକୃତର ନୀଚମାନସିକତା ଥିବା ମଣିଷଙ୍କ ପାଇଁ । ଶୈଶବ ଯାଏ, ଯୌବନ ଆସେ । କେଜାଣି କାହିଁକ ହଠାତ୍ ତା ପାଇଁ ଅନେକ ବାଧାବଘ୍ନ ସବୁ ସୃଷ୍ଟି ହୋଇଯାଏ । ନା ପୂର୍ବପର ଆଉ ସ୍ୱାଧୀନ ଲାଗେନ ତାକୁ । ଘରକୋଣ ସତେ ଯେମିତ ତା ପାଇଁ ସୁନାପଞ୍ଜୁରୀଟିଏ । ସେଇଠି ହିଁ ରହବାକୁ ହୁଏ । ସ୍ନେହରେ ଗୁହୁଁଥିବା ଦୃଷ୍ଟି ସବୁ ଧିରେ ଧିରେ ଲୋଲୁପ ଦୃଷ୍ଟିରେ ପରଣତ ହେବାରେ ଲାଗେ । ସେଥିପାଇଁ କାଳେ ସେ ଦାୟୀ, ସେଇଥିପାଇଁ ନଜକୁ ଯଥାସାଧ ଲୁଚେଇବାକୁ ଚେଷ୍ଟା କରେ । ସ୍କୁଲ ପାଠପଢ଼ାରେ ଇତ ହୋଇଯାଏ । ପରଚତ ଅପରଚତ ସମସ୍ତଙ୍କଠାରୁ ଦୂରେଇ ରଖିବାର ଅନେକ ଚେଷ୍ଟା ଘରେ ହୁଏ, ହେଲେ ଦନ ଆସେ ଜଣେ ଅପରଚତ ସହ ତାକୁ ବାନ୍ଧିଦଆଯାଏ ସବୁଦନପାଇଁ ।

ଏହା ଦୁନଆର ନୀତ । ତୁମକୁ ଭଲଲାଗୁ ବା ନଲାଗୁ, ସବୁବେଳେ ମୁହଁରେ ହସ ରଖି ଦେଖାଇବାକୁ ପଡ଼େ, ଖୁସିରେ ଥିବାର କଥା । ଶରୀର ଆଉ ମନକୁ ବାରମ୍ବାର ଆଘାତ ମିଳେ ତଥାପି ଏହାହିଁ ନୟମ ବୋଲ କହ ସବୁକଛି ସହବାକୁ ହୁଏ । ହାତରେ ଶଙ୍ଖା, ପାଦରେ ପାଉଁଜ ଆଉ ଅଳତା, ବେକରେ ସୁନାର ହାର ପିନ୍ଧେଇ ଦେଇ ମନକୁ ଖୁସି କରବାକୁ ହୁଏ ସତ, କନ୍ତୁ ଏ ସବୁ ଭତରେ ସୀଛିରେ ଲାଗିଥିବା ସିନ୍ଦୁର ସତେ ଯେମିତ ମୋହର ହୋଇଥାଏ ଆଜୀବନ ଦାସତ୍ୱର, ତଳ ତଳ କର ନଜକୁ ଜଳାଞ୍ଜଳୀ ଦେବାପାଇଁ ଏକ ନୂତନ ଧରଣର ନାଟକରେ ଅଭନୟ କରବାକୁ ହୁଏ ।

ବଡ଼ି ଭୋରରୁ ଉଠି ଘରର ଯାବତୀୟ କର୍ମ କରବା, ମନୁଷ୍ୟ କମ କନ୍ତୁ ଯନ୍ତ୍ରପର ଖଟିବା, ଇଚ୍ଛା ଅନଚ୍ଛାର ଉର୍ଦ୍ଧ୍ୱରେ ରହ ସ୍ୱାମୀ ଓ ପରବାର ପାଇଁ ଓଷା, ବ୍ରତ ଆଦ ପାଳନ କରବା । ସମସ୍ତଙ୍କ ମନ ଗୁହିଁ ରନ୍ଧଣା କରବା, ସ୍ୱାମୀ ଶଶୁର, ଶାଶୁ ଆଦଙ୍କୁ ଖାଇବାକୁ ଦେଇଦେବାପରେ, ଯାହା ମିଳେ ତାହା ହିଁ ପ୍ରାପ୍ୟ ବୋଲ ମନରେ ଧାରଣା ଟିଏ ସୃଷ୍ଟି କରବା । ତା ଦେହର ରୋଗବାଧକକୁ ପିଠିରେ ପକାଇ ସମସ୍ତଙ୍କ ସେବା କରିଗୁଲେ । ମାତୃତ୍ୱର ମୂଲ୍ୟବୋଧ





ଜାଣିବାପୂର୍ବରୁ ଅପ୍ରାପ୍ତବୟସ୍କା ମାଆଟିଏ ହୋଇଯାଏ । ଯଦି ତା ଔରସରୁ ପୁଣି ଜଣେ ଝିଅ ଜନ୍ମ ହୁଏ ତ ଆଉ ଏକ ଅତ୍ୟାଗ୍ଚରପୂର୍ଣ୍ଣ ଜୀବନଚକ୍ରର ପୁନରାବୃତ୍ତି ହୁଏ ।

ହେଲେ ଏତକ ବୁଝି ହୁଏନି, ପଞ୍ଚଭୂତରେ ସବୁ ମଣିଷ ଯଦି ଗଢ଼ା ତା ହେଲେ ତା ଦେହରେ କଣ ଏମିତ ଅଧିକା ଥାଏ ଯେ ତାକୁ ସର୍ବଂସହା ହେବାକୁ ପଡ଼େ । ସେ ସହିପାରେ ବୋଲି ହୁଏତ ତା ଉପରେ ଏମିତ ଅତ୍ୟାଗ୍ଚର ହୁଏ ନା ସର୍ବଂସହା ନାମକୁ ଯଥାର୍ଥ କରିବାକୁ ଯାଇ ସେ ସବୁ ଅଭିନୟ କରିଥାଏ । କେଉଁ ସ୍ୱାର୍ଥରେ ସେ ନିଜ ଜୀବନର ଜଳାଞ୍ଜଳୀ ଦିଏ । ପଶୁଭଳି ନିର୍ଯ୍ୟାତନା ସହେ ତଥାପି ମୁହଁ ଖୋଲି କେବେ କିଛି କହିବାର ସାହାସ ପାଏନି । ତାକୁ ଅସମ୍ମାନ କରିବା ପୁରୁଷ ମାନଙ୍କ ପୌରୁଷତ୍ୱ ନା ଟିକେ ସମ୍ମାନ ଆଉ ଯତ୍ନରେ ତା'ଠୁ ପଛରେ ପଡ଼ିଯିବାର ଭୟ? ଆଇନ, ନ୍ୟାୟ ନାଁରେ ଡିଣ୍ଡିମ ପିଟି ଶୋଷଣର ପ୍ରମୁଖ ମାଧ୍ୟମ ସାଜିଥିବା ଏହି ପୁରୁଷପ୍ରଧାନ ସମାଜରେ ସେ ଖାଲି ଭୋଗ୍ୟବସ୍ତିଟେ ନା ନିଜକୁ ବଳବାନ ବୋଲି ପରିଚୟ ଦେବାରେ ସେଇଟା ଗୋଟିଏ ମାଧ୍ୟମ? ଶିକ୍ଷିତ ସମାଜର ତା ପ୍ରତି ଅତ୍ୟାଗ୍ଚର ବି ନିଆରା । ଠି ଯେମିତ ଅଜାଗା ଘା, ନା ନିଜେ ଦେଖି ହୁଏ ନା କାହାକୁ ଦେଖାଇ ହୁଏ ।

ଜଣେ ନାରୀ ହିସାବରେ ମୋର ପୁରୁଷଙ୍କୁ ଅସମ୍ମାନ କରିବାର କିଛି କାରଣ ନାହିଁ । କାରଣ ମୋ ବାପା ବି ଜଣେ ପୁରୁଷ । ହେଲେ ମୋର ବିନମ୍ର ଅନୁରୋଧ ପୁରୁଷର ପୌରୁଷତ୍ୱକୁ ତା ଉପରେ ଶାରୀରିକ, ମାନସିକ ବା ସାମାଜିକ ନିର୍ଯ୍ୟାତନା ଦେବାରେ ଜାହିର ନ କରି ତା ସୁରକ୍ଷା ଦେବାରେ ନିୟୋଜିତ କରିଲେ ଯଥାର୍ଥ ହେବ ।

କାରଣ ସେ ନାରୀ, ସେ କ୍ଷମା ଅବତାରୀ । ତା ପଣତକାନିରୁ ମମତା କେବେ ସରେନି । ତା ଓଠରୁ ହସ କେବେ ଲିଭେନି । ତା ହୃଦୟ ତ ସ୍ନେହର ଭଣ୍ଡାର ଯାହା କେବେ ଖାଲି ହୁଏନା । କୋମଳ ସେ ପୁଷ୍ପପରି ସୁନ୍ଦର ସେ ପରୀଟିଏ ଭଳି, ପବିତ୍ର ସେ ଗଙ୍ଗାପରି । ତା'ର ସମ୍ମାନ, ସୁରକ୍ଷାକୁ ଅକ୍ଷୁର୍ଣ୍ଣ ରଖିବା ଆମ ସଭିଙ୍କ ଦାୟିତ୍ୱ ।

ନ ହେଲେ, ସେହି ନାରୀର ଲୁହ ଯେ ଏ ପ୍ରାଚୁର୍ଯ୍ୟଭରା ସୁନ୍ଦର ପୃଥିବୀକୁ ବିନାଶ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିବ ସେଥିରେ ତିଳେ ହେଲେ ସନ୍ଦେହ ନାହିଁ ।

ପଶରବନ୍ଧା, ବାଲେଶ୍ୱର

mignonjay15@gmail.com



# ବୃକ୍ଷର ଅଭିଶାପ



ସନ୍ଧ୍ୟାରାଣୀ ପଟ୍ଟନାୟକ

ଏକ ଛୋଟିଆ ଗାଁ ଥିଲା । ଗାଁକୁ ଲାଗି ଥିଲା ଏକ ଘଞ୍ଚ ଜଙ୍ଗଲ । ସେହି ଜଙ୍ଗଲରେ ବିଭିନ୍ନ ପ୍ରଜାତିର ଗଛଲତା ରହିଥିଲା, ସେହି ମଧ୍ୟରେ ଥିଲା ଶାଳ, ପିଆଶାଳ, ଆମ୍ବ, ବର, ପଣସ ଇତ୍ୟାଦି । ପ୍ରତିଦିନ କାଠୁରିଆମାନେ ଜଙ୍ଗଲକୁ କୁରାଢ଼ୀ ନେଇ ଯାଆନ୍ତି ଆଉ ଦିନସାରା ଠୋ ଠା... ଶବ୍ଦରେ ଜଙ୍ଗଲ କମ୍ପିଉଠେ । ସନ୍ଧ୍ୟା ହେଉ ହେଉ ଅନେକ ନିରୀହ ବୃକ୍ଷ ଧରାଶାୟୀ ହୋଇଥାଆନ୍ତି । ଏହା ନିତିଦିନର ଘଟଣା । କିଛି ଲୋକ ଧାରୁଆ ଉପକରଣ ବ୍ୟବହାର କରି ବୃକ୍ଷର ବଳ୍କଳକୁ  ଛଡ଼େଇ ଦିଅନ୍ତି । ଫଳରେ ବୃକ୍ଷର ଶରୀରର ରକ୍ତ ଝରି ଝରି ଯାଉଥାଏ । ବୃକ୍ଷର ଶରୀର.. ଓହ୍... ! ଦେଖିଲେ କଷ୍ଟ ଲାଗୁଥାଏ । ତା ଶରୀର ଏତେ ମାତ୍ରାରେ ଜଳାପୋଡ଼ା ହେଉଥିଲା ଯେ ସେ ଚିତ୍କାର କରି ଉଠେ । ଧୀରେ ଧୀରେ ବୃକ୍ଷଟି କିଛିଦିନର କଷ୍ଟ ସହିବାପରେ ଧରାଶାୟୀ ହୋଇ ମୃତ୍ୟୁବରଣ କରେ । ଏଇମିତି ଦିନକୁ ଦିନ ଜଙ୍ଗଲରେ ବୃକ୍ଷ ସବୁ ଗୋଟିଏ ପରେ ଗୋଟିଏ କାଠୁରିଆଙ୍କ କୁଦୃଷ୍ଟିରେ ପଡ଼ିବାକୁ ଲାଗିଲେ । ଦିନ ଏମିତି ଆସିଲା, ଜଙ୍ଗଲ ଆଉ ଘଞ୍ଚ ରହିଲା ନାହିଁ ।

ଏହି ସବୁ ଦୃଶ୍ୟ ଜଙ୍ଗଲର ବାକି ଗଛ ସବୁ ଦେଖନ୍ତି । ସେମାନେ ଚିନ୍ତାଗ୍ରସ୍ତ ହୋଇପଡ଼ିଲେ । ମନୁଷ୍ୟମାନଙ୍କ ଅତ୍ୟାଚାର ଦିନକୁ ଦିନ ଅସହ୍ୟ ହେଲାଣି, ସେମାନେ ପରସ୍ପର ସହ ପରାମର୍ଶ କରିବା ଆରମ୍ଭ କରିଦେଲେ । “ଆଉ କେତେ ଦିନ ଏମିତି କଷ୍ଟ ସହିବା ?”

ଶାଳ ଗଛ କହିଉଠିଲା, “ଭାଇମାନେ ଆମ ବଂଶ ଯେତେବେଗରେ ଲୋପ ପାଇଲାଣି, ଦିନ ଆସିବ ମୋତେ ଆଉ କେହି ଦେଖିବେନି । ଆଉ ହାତଗଣତି ଗଛ ଆମ ବଂଶର ଅଛି । ଆଉ ସେ ଦିନ ବି ଦୂର ନାହିଁ, ଯେଉଁଦିନ ଆମ ବଂଶ ସମ୍ପୂର୍ଣ୍ଣ ଭାବରେ ଲୋପ ପାଇଯିବ ।”

ଖାଲି କଥାବାର୍ତ୍ତାରେ କିଛି ହେବାର ନାହିଁ । କିଛି ନା କିଛି ତ କରିବାକୁ





ପଡ଼ିବ । ଶେଷରେ ଏକ ଜରୁରୀକାଳୀନ ବୈଠକ କରାଯିବାର ଚନ୍ତା କରାଗଲା । ସେଥିପାଇଁ ଏକ ଦନ ମଧ୍ୟ ଧାର୍ଯ୍ୟ ହେଲା । ସଠିକ ସମୟରେ ସମସ୍ତ ବୃକ୍ଷ ସଭାରେ ଉପସ୍ଥିତ ହୋଇ ସାଂପ୍ରତକ ସମସ୍ୟା ବଷୟରେ ଚନ୍ତାପ୍ରକଟ କଲେ । କୁହାଗଲା, ଏହଭଳ ଭାବରେ ଯଦ ଦନକୁ ଦନ ଗଛ ସଂଖ୍ୟା କମ ହେବାକୁ ଲାଗିବ, ତେବେ କଣ ହେବ ? କାଠୁଆର ମାନଙ୍କୁ ଗଛ ନ କାଟିବା ପାଇଁ ଆକୁଳ ନବେଦନ କରାଯିବ । ସମସ୍ତେ ହଁ ଭରଲେ, ସଭା ସମାପ୍ତ ହୋଇଗଲା ସତ, କନ୍ତୁ ଚନ୍ତା ରହଥିଲା । ଦନେ ଜଙ୍ଗଲରେ ଗଛକାଟିବା ପାଇଁ ଆସିଥିଲେ ଦଳେ କାଠୁରିଆ । ସେମାନେ ଯେମିତ ଗଛକୁ ହାଣିବାକୁ ଲାଗିଲେ ଠିକ୍ ସେତକ ବେଳେ ପାଖରେ ଥିବା ଅନ୍ୟ ଗଛମାନେ କହଲେ, 'ଆମକୁ ଏତେ ନର୍ମମ ଭାବରେ କାହିଁକ ହତ୍ୟା କରୁଛ ? ଯଦ ଆମକୁ ଏହଭଳ ହତ୍ୟା କରବ, ତା ହେଲେ ଦନ ଆସିବ ଯେତେବେଳେ ଆମ ବଂଶ ନପାତ ହୋଇଯିବ । ସେତେବେଳେ ତୁମେ କଣ କରବ ?

କାଠୁରିଆମାନେ କନ୍ତୁ ସେ ସବୁ କଥାକୁ ଗୁରୁତ୍ୱ ଦେଲନାହିଁ । ଶହେ ବର୍ଷ ପୁରୁଣା ଆମ୍ବ ଗଛଟିଏକୁ କାଟିବାରେ ଲାଗିଥାଆନ୍ତି ସେମାନେ । ଦେଖୁ ଦେଖୁ ବଶାଳ ବୃକ୍ଷଟି ଧରାଶାୟୀ ହୋଇଗଲା । ଏହା ଦେଖି ଜଙ୍ଗଲରେ ଅନ୍ୟ ବୃକ୍ଷମାନେ ମନସ୍ତାପ କରଲେ, ବୃଦ୍ଧବୃକ୍ଷର ପୁଅ କାଠୁରିଆମାନଙ୍କୁ ଅଭଶାପ ଦେଉଛ । "ହେ ମନୁଷ୍ୟଜାତ ତୁମ୍ଭର ଆମେ କଣ କରଥିବୁ ଯେ ତୁମେ ଆମକୁ ଏମିତ ଅକାଳରେ ମୃତ୍ୟୁମୁଖରେ ଠେଲ ଦେଉଛ । ଦନ ଆସିବ ସମୁଦାୟ ଧରତ୍ରୀର ସବୁଜମା ହଜଯିବ । ବର୍ଷା ହେବାବନ୍ଦ ହେବ । ସବୁ ଧ୍ୱଂସ ହୋଇଯିବ । କୌଣସି ସ୍ଥାନରେ ବ ଫସଲ ହେବା କଷ୍ଟ ହେବ । ଜମି ଫାଟି ଆଁ କରବ । ଆମ୍ଭେ ବର୍ତ୍ତମାନ ଯେଉଁଭଳ ଭାବରେ ବୁକୁ ଫଟେଇ କାନ୍ଦୁଛୁ, ତୁମେମାନେ ମଧ୍ୟ ବୁକୁ ଫଟେଇ କାନ୍ଦିବ ଓ ସମ୍ପୂର୍ଣ୍ଣରୂପେ ଧ୍ୱଂସ ପାଇଯିବ ।"

ଏହା ଶୁଣି କାଠୁରିଆ ଭାଇମାନେ ଚମକ ପଡ଼ିଲେ । "ନା... ନା... କ'ଣ ଏତେ ବଡ଼ ଅଭଶାପ ! ! !" କାଠୁରିଆମାନେ ପରସ୍ପର ସହ କଥା ହେଲେ, "ଏ କ ଅଭଶାପ ? ଆମର ବହୁତ ବଡ଼ ଭୁଲ ହୋଇଗଲା ଆମକୁ କ୍ଷମା କରଦଅ ।"

ଗଛ କହଲା, "ନା... ଜମା ନୁହେଁ ।"

କାଠୁରିଆମାନେ ପୁଣି ନେହୁରା ହୋଇ କହଲେ, "ନା ଆମର ଭୁଲ ହୋଇଗଲା । ଆମକୁ କ୍ଷମାକର । ଆମ ଭୁଲପାଇଁ ସମଗ୍ର ଜୀବଜଗତ କାହିଁକ ନଷ୍ଟ ହେବ ?"





ଗଛ କହଲା, "ଠିକ୍ ଅଛ । ହେଲେ ମାତ୍ର ଗୋଟିଏ ବକଳ୍ପ ରହଛ ଏ ସବୁରୁ ନସ୍ତାର ପାଇବାପାଇଁ..."

ସମସ୍ତେ ଏକ ସ୍ୱରରେ କହଉଠିଲେ, "କ ଉପାୟ ଅଛ କୁହ ଆମେ କରବୁ ।"

ଗଛ କହଲା, "ତୁମେ ଯେତେ ଗଛ ସବୁ କାଟିଛ, ତାର ଦଶଗୁଣ ଗଛ ଯଦ ତୁମେ ରୋପଣ କରବ ଆଉ ସେ ସବୁର ଭଲ ଧ୍ୟାନ ନେବ, ହୁଏତ ତୁମେ ଧ୍ୱଂସ ମୁଖରୁ ବଞ୍ଚିପାରବ ।"

କାଠୁରିଆମାନେ ଗଛର ପ୍ରସ୍ତାବରେ ହଁ ଭରଲେ । ଧିରେ ଧିରେ ଜଙ୍ଗଲର ସବୁଜମା ପୁଣିଥରେ ଫେରିଆସିଲା । ଜଙ୍ଗଲରେ ନୂଆ ନୂଆ ଅନେକ ପ୍ରକାରର ଗଛ ସେମାନେ ଲଗାଇଲେ । ଏବେ ଜଙ୍ଗଲରେ କାଠର ଅଭାବ ନଥିଲା କନ୍ତୁ ସବୁକଛ ଧ୍ୱଂସ ହେବାଭଳ କ୍ଷୟ ବ ହେଉନଥିଲା ।

ଅଧ୍ୟାପିକା, ଓଡ଼ିଆ ବଭାଗ

ଅରହାନ୍ତ ମହାବଦ୍ୟାଳୟ, ବ୍ରହ୍ମପୁର

ଇମେଲ୍ - sandhyaranipatnaik5@gmail.com





# ବନା ପଇସାରେ ଗୃକରଣୀ



ଦୁର୍ଗା ପ୍ରସାଦ ପଟ୍ଟନାୟକ

ସୃଷ୍ଟିର ସମସ୍ତ ସୌନ୍ଦର୍ଯ୍ୟକୁ ଏକତ୍ରକର ସତେ ଯେମିତ ବଧାତା ସୁମିକୁ ଗଢ଼ିଥିଲ ପର ମନେହୁଏ ତାର ରୂପ ଲାବଣ୍ୟକୁ । ସମସ୍ତ ସୌନ୍ଦର୍ଯ୍ୟର ଅଧିକାରଣୀ ସୁମି ନଜର ରୂପଲାବଣ୍ୟକୁ ନେଇ ବେଶ୍ ଆନନ୍ଦିତ ଓ ଗର୍ବିତ ମଧ । ତା ମନରେ ସଦାସର୍ବଦା ଗୋଟିଏ ଅବାସ୍ତବ ଭାବନା ବସା ବାନ୍ଧିଥାଏ, ସେଇଟା ହେଲା ମୋର ସୌନ୍ଦର୍ଯ୍ୟର ମାପକାଠିରେ ସୃଷ୍ଟିର କୌଣସି ନାରୀ ଊର୍ଦ୍ଧ୍ୱଗାମୀ ହେବାଟା ଅସ୍ପଷ୍ଟ । ନଜେ କେମିତ ସମସ୍ତ ସୁଖକୁ ସାଉଁଟି ଧର ସଂସାରରେ ଜଣେ ସୁଖୀ ନାରୀର ପରଚୟ ପ୍ରାପ୍ତ କର ସାରାଜୀବନ କେମିତ ସୁଖରେ ଜୀବନଯାପନ କରବା । ସେଇଟା ତା'ର ମୂଳ ଉଦ୍ଦେଶ୍ୟ ହେଲେ ତାର ବନ୍ଧୁବାନ୍ଧବ, ସାହିପଡ଼ିଶା, ପରବାର ବର୍ଗ କମ୍ବା ସାଙ୍ଗ ମଇତ୍ରଙ୍କ ମଧ୍ୟରୁ କେହ ଆନନ୍ଦିତ ହେଉଛ କ ନଜ ସ୍ୱପ୍ନ ସାକାର ହେବାକୁ କେନ୍ଦ୍ରବନ୍ଦୁ କର କୌଣସି ଉତ୍ସବ ପାଳନ କରୁଛ ଜାଣିଲେ ସତେ କ ସୁଖିଲ ପାଳରେ ନଆଁ ଲାଗିଲାପର ନଆଁ ଲାଗିଯାଏ ସାରାଶରୀରରେ ସୁମିର ।

ଅନ୍ୟକୁ ନଚ ଦୃଷ୍ଟିରେ ଦେଖିବା ତାକୁ ଅସମ୍ମାନ କରବା, ଗୁରୁଜନ, ପିତୃତୁଲ୍ୟ ବ୍ୟକ୍ତି ବଶିଷ୍ଟଙ୍କୁ ବ୍ୟବହାର୍ କରବା ତାର ଗୋଟିଏ ନତଦନଆ ଅଭ୍ୟାସ ।

ବାନ୍ଧବୀଙ୍କ ମେଳରେ ବସି କୌଣସି ବାନ୍ଧବୀ ନଜଘରର କୌଣସି ଦୁଃଖପୂର୍ଣ୍ଣ ପରସ୍ଥିତକୁ ପ୍ରକାଶ କର ବାନ୍ଧବୀମାନଙ୍କ ସଙ୍ଗତରେ ଲୁହ ଝରଉଥିବ, ତାହାହେଲେ ମନମୁଗ୍ଧକର ହସ ହସି ଉକ୍ତ ବାନ୍ଧବୀଙ୍କ କଥାକୁ ତାଚ୍ଛଲ୍ୟ ପ୍ରମାଣିତ କରଦଏ ।

କହବାକୁ ଗଲେ ସୁମି ପିଲାଟି ଦନରୁ ଦୁଃଖଦୁର୍ଦ୍ଦଶା ଅଭାବ ଅନାଟନ କଣ ? ଦନେହେଲେ ବ ଏମିତ ପରସ୍ଥିତର ଶୀକାର ହେଇନଥାଏ କ ଏମିତ



କୌଣସି ପରସ୍ଥିତ ତା ଗ୍ଭଇ ମାଡ଼ିବାକୁ ଦେଇନାହାନ୍ତି ବାବାବୋଉ ।

ସୁମିର ବାହା କର୍ମରେ ଜଣେ ଶିକ୍ଷକ ଏବଂ ମା ଶିକ୍ଷୟିତ୍ରୀ, ଗୋଟିଏ ବୋଲି ଅଲଅଳୀ ଗେହ୍ଲୀ ଝିଅ ସୁମି । ଯେତେବେଳେ ଯାହା ଆବଶ୍ୟକ ତା ପୂର୍ବରୁ ତୁଲାଇ ଦଅନ୍ତି ବାପାବୋଉ । ତାହା ହେଲେ ଦୁଃଖ ବୋଲି ଜନଷ କଣ କେମିତ ଜାଣିଥାନ୍ତା ସିଏ ?

ଦନେ ସୁମି ତାର ଜଣେ ବାନ୍ଧବୀଙ୍କ ବାହାଘରକୁ ନମନ୍ତ୍ରିତ ହୋଇ ଯାଇଥାଏ । ବାନ୍ଧବୀଙ୍କ ପରବାର ବର୍ଗ ଏକତ୍ରତ ହୋଇ ଉକ୍ତ ମାଙ୍ଗଳକ କାର୍ଯ୍ୟକ୍ରମକୁ ଆହ୍ଲାଦତର ସହ ଉପଭୋଗ କରୁଥାନ୍ତି । ବରପକ୍ଷରୁ ମଧ କେତେକ ବ୍ୟକ୍ତି ବଶିଷ୍ଟ ଏବଂ ସୁଜନଙ୍କ ଉପସ୍ଥିତରେ ବରପାତ୍ରକୁ ସିଧାସଳଖ ପ୍ରଶ୍ନକରେ, ଆପଣ ତ ଦେଖିବାକୁ ବହୁତ ସୁନ୍ଦର । ହେଲେ ଏମିତ ଗୋଟିଏ ଅସୁନ୍ଦରୀ ଝିଅକୁ କେମିତ ମନୋନୀତ କଲେ ଜୀବନସାଥୀ ଭବରେ ଗ୍ରହଣ କରବାପାଇଁ ?

ସୁମିର ଏମିତ ଅବାନ୍ଧକର ପ୍ରଶ୍ନରେ ସମସ୍ତେ ଚକତ ହୋଇଉଠନ୍ତି । ସେ ବରପାତ୍ର ମଧ ଆଚମ୍ବିତ ହୋଇ ସୁମିର ଗୋଡ଼ରୁ ମୁଣ୍ଡଯାଏ ନରୀକ୍ଷଣ କରନ୍ତି ଏବଂ କୌଣସି ଉତ୍ତର ନ ଫେରାଇ ଗୋଟେ ତାଚ୍ଛଲ୍ୟଭରା ହସଟିଏ ଓଠରେ ଆଣ ନରବତା ଅବଲମ୍ବନ କରନ୍ତି ।

ସୁମି ପୁଣି ତା ପ୍ରଶ୍ନ ଦୋହରାଇବାରେ ଲାଗିପଡ଼େ । ବବାହର ଅନେକ କାର୍ଯ୍ୟ ତୁଲାଉଥିବା ତା ବାପା ଦେବେନ୍ଦ୍ରବାବୁଙ୍କ କାନରେ ଏ କଥାଟା ପଡ଼େ । ସିଧା ଆସି ସୁମିକୁ କହନ୍ତି, ଏ ସବୁ କଣ ହେଉଛ ? ତୋର ଏମିତ ଗୋଟେ ଅବାନ୍ଦକର ପ୍ରଶ୍ନବାଚୀରେ ତୋର ବାନ୍ଧବୀଙ୍କର ମନରେ କେତେ ଯେ ଆପତ ସୃଷ୍ଟି କରୁଥିବ ତୁ ସେ କଥା ବୁଝିପାରୁଛୁ ତ ?

ମୁଁ କଛି ଭୁଲ କଥା କହୁନ କମିଛ ମଧ କହୁନ ବାପା । ଯେଉଁଟା ସତ ତାହା ହିଁ କହୁଛ । ଆଉ ସତ ମନରେ ଆଘାତ ସୃଷ୍ଟିକରୁ କମ୍ବା ଦୁଃଖର ନଇରେ ଭସାଉ ସତଟା କେବଳ ସତ ବାପା । ସୁମି ବାପାଙ୍କୁ ନଃସଙ୍କୋଚରେ ଏସବୁଅ ସମସ୍ତଙ୍କ ସମ୍ମୁଖରେ ଦୃଢ଼ତାର ସହ କହଯାଏ ।

ସୁମିର ଏପର ନଷ୍ଠୁରତାଭରା ଅଭାବନୀୟ ବ୍ୟବହାରରେ ଦେବେନ୍ଦ୍ରବାବୁ ଉତ୍ୟକ୍ତ ହୋଇପଡ଼ନ୍ତି । ଆଉ ନଜ କ୍ରୋଧକୁ ନଜ ହୃଦୟରେ ସୀମିତ ରଖି ସୁମିକୁ କହନ୍ତି, ତୁ ତୋ ବ୍ୟବହାର ପ୍ରତଟୀକେ ଧାନ ଦେ ମା, କଛି କହବାପୂର୍ବରୁ ତୁ ଭୁଲଯାଆନ ତୁ ବ ଗୋଟେ ନାରୀ ଆଉ ତୋର ବ ଏମିତ ଗୋଟେ ମୁହୂର୍ତ୍ତ ଆସିବ, ଯେଉଁ ମୁହୂର୍ତ୍ତରେ ବ ତୁ ମଧ ନୂଆ ସଂସାର ଆରମ୍ଭ କରବା ଉଦ୍ଦେଶ୍ୟରେ ଉତ୍ସୁକତାର ସହ କୌଣସି ସହୃଦୟ ଆମନ୍ତ୍ରିତ ମଣିଷକୁ ବେଦୀରେ ବସି ସୁଜନଙ୍କ ଉପସ୍ଥିତରେ ବବାହ କରୁଥିବୁ, ଠିକ୍ ସେଇ ସମୟରେ ତୋରପର ତୋର କୌଣସି





ବାନ୍ଧବୀ ଏମିତ ଏକ ଅପ୍ରୀତକର ପ୍ରଶ୍ନକରେ । ତାହା ହେଲେ ତତେ କେମିତ ଲାଗିବ ? ତା ପରେ ତୋ ବାନ୍ଧବୀ ଖାଲ ତୋର ବାନ୍ଧବୀ ନୁହଁ । ସେ ମୋର ପିଲାଦିନର ବନ୍ଧୁ ସୁବ୍ରତର ଝିଅ ମଧ । ତେଣୁକର ତୋ ପକ୍ଷରୁ ପ୍ରଦାନ କରାଯାଇଥିବା ଅପମାନ ଖାଲ ସୁବ୍ରତକୁ କ ତା ଝିଅ କମ୍ପା କଛ କ୍ଷଣପରେ ସମ୍ପର୍କରେ ସୁବ୍ରତର ଜୁଆଇଁ ହେବାକୁ ଥିବା ଜୋଇଁ ପୁଅକୁ ନୁହେଁ, ମୋର ଅନ୍ତରଙ୍ଗ ବନ୍ଧୁ ହସାବରେ ସେ ଅପମାନ ମୋତେ ମଧ ଭୋଗିବାକୁ ପଡୁଛ । ଆଉ ସବୁଠାରୁ ଦୁଃଖର ବଷୟ ହେଲା, ସେ ଅପମାନ ତୁ ଦେଉଛୁ । ସେତେବେଳକୁ ଦେବେନ୍ଦ୍ର ବାବୁଙ୍କ ଆଖି କୋଣରୁ ଲୁହ ଜକେଇ ହେଇ ଆସୁଥାଏ ।

ସେଦନର ଘଟଣାପରେ ସୁମିର ସମସ୍ତ ବାନ୍ଧବୀ ସୁମିକୁ ଘୃଣା କରବା ସାଙ୍ଗକୁ ଭୟମଧ କରବାକୁ ଆରମ୍ଭ କରନ୍ତ । କୌଣସି ବାନ୍ଧବୀ ନଜ ବବାହ ଉତ୍ସବରେ ସୁମିକୁ ଆମନ୍ତ୍ରଣ କଲେନାହିଁ । ଜଣେ ପରେ ଜଣେ ସମସ୍ତ ବାନ୍ଧବୀଙ୍କ ବବାହ ସମ୍ପୂର୍ଣ୍ଣ ହୋଇଗଲା । କେବଳ ବାକ ରହଗଲା ସୁମି । ସୁମି ପାଇଁ ଅନେକ ବବାହ ପ୍ରସ୍ତାବ ବାପା ଯୋଗାଡ଼ କରୁଥାନ୍ତ ହେଲେ ଅନେକ ଖେଦେଖେନା ଦେଖାଇ ସମସ୍ତ ପ୍ରସ୍ତାବକୁ ନାକୋଚ କର ପକାଉଥିଲା । ସୁମି, ଯେଉଁଟାକ ବାପାମା'ଙ୍କର ଚନ୍ତାର କାରଣ ହୋଇପଡୁଥିଲା । କେତେ ପୂଜା ଅର୍ଚ୍ଚନା, କେତେ ଦଅଁ ଦେବତାଙ୍କ ଠାରେ ମାନସିକ ସରଗଲା । ହେଲେ ମଧ ସୁମି କାହାରକୁ ନଜର ଜୀବନସାଥୀ ରୂପରେ ଗ୍ରହଣ କରବାକୁ ଯୋଗ୍ୟ ମନେ କଲାନ । କଛ ଦନପରେ ବୋଧହୁଏ ଠାକୁରଙ୍କ ଅମୃତ ଦୃଷ୍ଟି ସୁମି ଉପରେ ପଡ଼ିଲା ନା କଣ, ଗୋଟେ ପ୍ରସ୍ତାବରେ ରାଜ ହୋଇଗଲା ସୁମି । ବରପାତ୍ର ଦେଖିବାକୁ ଠିକ୍ ରାଜକୁମାର ପର ଡଉଲ ଡାଉଲ ଚେହେରା, ମଲା ଜହ୍ନପର ଦେହ । ସୁମଧୁର କଣ୍ଠସ୍ୱର ସାଙ୍ଗକୁ ଅଜସ୍ର ଧନର ମାଲକ ମଧ । ନାମଟି ହେଲା ରୋହତ ପଟ୍ଟନାୟକ ଓରଫ୍ ରାଜ୍ ।

ରାଜର ରୂପ, ଗୁଣ, ଷ୍ଟାଟସ୍, ସବୁଦଗରୁ ଶହେରୁ ଶହେ ନମ୍ବର ସୁମିଠାରୁ ହାସଲ କର ଅଳପଦନ ମଧରେ ସୁମିଠାରୁ ସ୍ୱାମୀ ହେବାର ସାର୍ଟିଫିକେଟ୍ ହାସ କରବ ସୁଜନଙ୍କ ସମ୍ମୁଖରେ ରାଜ ଏ ମନ ଯାହା ଚାହେଁ, ପ୍ରାପତ ନଷ୍ଟଏଁ ଭଳ ସୁମିକୁ ତାର ମନ ଜାଣି ମନଚହ୍ନା ବରପାତ୍ରଟିଏ ଈଶ୍ୱର ତାକୁ ପ୍ରଦାନ କରଛନ୍ତ । ଆଉ ସୁମିପର ଜଣେ ଆତ୍ମଗର୍ବୀ ନାରୀ ରାଜପର ଗୋଟେ ସର୍ବଗୁଣ ସମ୍ପର୍ନ୍ନ ମଣିଷଟିକୁ ନଜର ଜୀବନସାଥୀ ଭାବରେ ଚୟନ କରଥିବାରୁ ଅତ୍ୟନ୍ତ ଆହ୍ଲାଦତ ହେବା ସାଙ୍ଗକୁ ଆତ୍ମବସ୍ମୃତ ହୋଇପଡୁଥାଏ । ସତେ ଯେମିତ ତା ପାଦ ଭୂମି ସ୍ପର୍ଶ ନ କର ମନର ଆକାଶରେ ଗୋଟେ ରଙ୍ଗ ଚଢ଼େଇ ପର ତାର ଡେଣା ଝାଡ଼ି ଉଡ଼ିବୁଲୁଥାଏ । ସେଇ ଆକାଶରେ



ଆପେ ଆପେ ପୂର୍ଣ୍ଣଭାବରେ ଇନ୍ଦ୍ରଧନୁ ଟାଣି ହୋଇ ସ୍ୱଚ୍ଛନ୍ଦତାର ସହ ତାକୁ ଗୁହିଁ ରହିଥାନ୍ତି । ମୁଠା ମୁଠା ମୋତି ମାଣିକ ଅଜାଡ଼ି ହୋଇପଡ଼େ ତାର ସ୍ୱପ୍ନର ଭୂପୃଷ୍ଠରେ । ଲକ୍ଷ ଲକ୍ଷ ଗୋଲାପ ଫୁଲର ପାଖୁଡ଼ା ଝିପ୍ ଝିପ୍ ବର୍ଷାପରି ଆସି ପଡ଼ନ୍ତି ମନରେ, ପ୍ରାଣରେ, ହୃଦୟରେ । ସୁମିହିକରେ ପୁଲକିତ ହୋଇପଡ଼େ ଚତୁର୍ପାର୍ଶ୍ୱର ପରିବେଶ ।

ମଝିରେ ମଝିରେ ରାଜଙ୍କ ଫୋନ୍ ପାଗଳୀ ସଜାଇଦିଏ ସୁମିକୁ ଗୁଡିକ ଭଲ ଜଗିବସି ରୁହେ ରାଜଙ୍କ ଫୋନ୍ ଅପେକ୍ଷାରେ । କୌଣସି କର୍ମବ୍ୟସ୍ତତାରେ ରାଜ୍ ଯଦି ସୁମି ସହ ଫୋନରେ କଥା ନ ହୋଇଛି ତାହା ହେଲେ ସୁମି ଘରେ ମା ବାପାଙ୍କ ମୁଣ୍ଡ ଖାଇପକାଏ । ସେଇ ଗୋଟେ ପ୍ରଶ୍ନକୁ ବାରମ୍ବାର ଦୋହରାଇ । ସେଇଟା ହେଲା ରାଜ କଣ ପାଇଁ ଫୋନ୍ କରୁନାହାନ୍ତି ।

ଧିରେ ଧିରେ ରାଜ୍ ଏବଂ ସୁମି ସ୍ୱତଃ ସନ୍ନିକର୍ଷଣ ହେବାରେ ଲାଗନ୍ତି । ଦିନଧାର୍ଯ୍ୟ ହୋଇ ଉଭୟଙ୍କ ବିବାହ ମଧ୍ୟ ଅତ୍ୟନ୍ତ ଆଡ଼ମ୍ବର ସହ ସମାପ୍ତ ହୁଏ । ଭରି ଆନନ୍ଦର ସହ, ସେ ବଧୁ ବେଶରେ ରାଜଙ୍କ ଜୀବନସଙ୍ଗିନୀ ହୋଇ ରାଜଙ୍କ ଘରେ ପାଦ ପକାଏ ସୁମି । ରାଜଙ୍କ ଘରେ ଉତ୍‌ଫୁଲ୍ଲତର ପରିବେଶ । ସ୍ନେହ ଆଦର ବୋଲା କଥାବାର୍ତ୍ତା. ରାଜ ଉଆସ ପରି ଗୃହକୁ ଦେଖି ତା ଛାତି ଗର୍ବରେ କୁଣ୍ଢେ ମୋଟ ହୋଇପଡ଼େ । ଆଙ୍କି ଦେଇଯାଏ ନାଲି ଓଠରେ ଇଷତ ହସଟିଏ ଓଢ଼ଣାତଳେ ସୁମିର ।

ଅଳ୍ପ କେଇଟା ଦିନରେ ହାସହସ୍ୟତାର ପରିବେଶ ସ୍ତବ୍ଧ ହୋଇଯାଏ । ଆରମ୍ଭ ହୋଇଯାଏ ସୁମିର ସାଂସାରିକ ଜୀବନ । ପ୍ରତ୍ୟେକ ଦିନ ପ୍ରାତଃ କାଳରୁ ଉଠି ଗାଧୋଇ ପାଧୋଇ ଘରର ସମସ୍ତ କାର୍ଯ୍ୟ ତୁଲାଇବା ପାଇଁ ସ୍ୱାମୀ ଏବଂ ଶାଶୁଙ୍କ କଡ଼ା ନିର୍ଦ୍ଦେଶ । ସୁମି ଘୋରଣା ଶିଳପୁଆପରି ଘୋରି ହେଲା ସେଇ ରାଜ ଉଆସରେ । ହେଲେ ସୁମି ବେଶୀଦିନ ଧରି ବରଦାସ୍ତ କରିପାରିଲା ନାହିଁ, ଶାଶୁଘରେ ଏପରି ଅମାନୁଷିକ ଗପକୁ । ଦିନେ ରାଜକୁ ପ୍ରଶ୍ନ କଲା, ତମେ ତ କହୁଥିଲ ଏ ଘରର ଗୁକର ବାକର ସବୁ କିଛିଦିନ ପାଇଁ ଗାଁକୁ ଯାଇଛନ୍ତି, କେଇଟା ଦିନପରେ ଫେରି ଆସିବେ, ତେଣୁ ଏ ଘରର ସମସ୍ତ କାର୍ଯ୍ୟ ତତେ ତୁଲାଇବାକୁ ପଡ଼ିବ । ତମ ସହ ବୋଉ ମଧ୍ୟ କହିଥିଲେ । ତେଣୁ କରି ତମମାନଙ୍କ କଥାକୁ ସମ୍ମାନଦେଇ ମୁଁ ଏ ସବୁ କାମକୁ ଅନିଚ୍ଛା ସତ୍ତ୍ୱେ ତୁଲାଇବା ପାଇଁ ବାଧ୍ୟ ହୋଇଥିଲି । ନଚେତ୍ ମୋ ପରିକା ଝିଅ ଏ ସବୁ କାର୍ଯ୍ୟ "ମାଇଁ ଫୁଟ୍" । ଆଚ୍ଛା ରାଜ ମୁଁ ଗୋଟେ କଥା ବୁଝିପାରୁନି ଏ ଘରର ସମସ୍ତ କାର୍ଯ୍ୟ କେବଳ ମତେ ତୁଲାଇବା ପାଇଁ ଆପଣମାନେ ନିର୍ଦ୍ଦେଶଦେଲେ ହେଲେ ତମ ଭାଉଜ ମାନଙ୍କୁ କାହିଁକି ବାଦ





ଦେଲ ? ସେମାନେ କାହିଁଇ ତାଙ୍କ ଏସି ରୁମରୁ ବାହାର ଘରର କୌଣସି କାର୍ଯ୍ୟରେ ସହଯୋଗ କରୁନାହାନ୍ତ ? ଆରେ ଏସି ରୁମରୁ ବାହାର ଘରର ପାଇଟି କରବାତ ତେଣିକ ଥାଉ ତାଙ୍କର ଖାଇବାଠୁ ଆରମ୍ଭ କର ଜଳଖିଆ ପର୍ଯ୍ୟନ୍ତ ସବୁକ୍ଛ ମୋତେ ହିଁ ଠିକ୍ ସମୟରେ ଯୋଗାଇବାକୁ ପଡୁଛ, କଣ ପାଇଁ ? ଗୋଟେ ଲମ୍ବା ନଶ୍ୱାସଟିଏ ତ୍ୟାଗକର ସୁମି ଦମ୍ଭିଲ୍ ସ୍ୱରରେ କୁହେ ଏମାନଙ୍କ ଏସି ରୁମରେ ବସି ଅର୍ଡର୍ ମାଗିବା ପ୍ରଥମ ଦନରୁ ମୁଁ ଛଡ଼େଇ ଦଅନ୍ତ ଯେ ଖାଲ ନୂଆ ବୋହୁଟା ତ ତେଣୁ ଚୁପ୍ ରହଲ ହେଲେ ଆଉ ନୁହେଁ । ଆଜ ସନ୍ଧ୍ୟା ସୁଦ୍ଧା ଏ ଘରକୁ ଗୃକର ଗୃକରଣୀ ବ୍ୟବସ୍ଥା ନ କରଗଲେ ମୁଁ କାଲଠାରୁ ସମସ୍ତ ଅବସ୍ଥା ଖରପ କରଦେବ ।

ଅନେକ ସମୟ ଧର ସୁମିର କଥାକୁ ନର୍ବାକତାର ସହ ଶୁଣୁଥିବା ରଜ ଗୋଟେ ସ୍ମିତହସଟିଏ ଓଠରେ ସଜାଇ କୁହେ, “ଆଜକାଲ ଗୃକର ଗୃକରଣୀ ରଖିଲେ ଖର୍ଚ୍ଚ ଯେ କେତେ ପରମାଣର ହୁଏ ତମେ ତାର ହସାବ ଜାଣିଛ ? କେମିତ ଅବା ଜାଣିବ ? ତମର ସାତ ପୁରୁଷରେ କେହ ଗୃକର ଗୃକରଣୀ ରଖିବାର ସାମର୍ଥ୍ୟ ପାଇପାରନଥିବେ ।

ହଉ ଗ୍ଛାଡ଼ ସେ କଥା, ଶୁଣ ଆମର ଅଜସ୍ର ସମ୍ପତ୍ତି ଅଛ, ଓଡ଼ିଶାର ସ୍ଥାନେ ସ୍ଥାନେ ଆମର ଅନେକ ପ୍ରପର୍ଟି ଅଛ, ହେଲେ ବ ଆମ ଘରେ ଗୋଟିଏ ନୀତ ଅଛ, ଆଉ ସେଇଟା ହେଲ୍ ଅତ ଆବଶ୍ୟକ ହେଲେ ଯାଇ ଆମେ ଖର୍ଚ୍ଚ କରଥାଉ । ନଚେତ୍ ବାହ୍ୟ ଖର୍ଚ୍ଚକୁ ଆମେ ସମ୍ମତ ପ୍ରଦାନ ନ କର କେମିତ ସେ ବାହ୍ୟଖର୍ଚ୍ଚରୁ ନସ୍ତାର ମିଳବ ସେ ନେଇ ଆମେ ଯୋଜନା ତଆର କରଥାଉ । ଆଉ ଆମ ଯୋଜନାକୁ କଳେ ବଳେ କଉଶଳେ ଜୀବନ ଦେଇଥାଉ । ଠିକ୍ ଯେମିତ ଗୃକର ବାକରଙ୍କ ଖର୍ଚ୍ଚକୁ ଅଙ୍କୁଶ ଲଗାଇବା ଉଦ୍ଦେଶ୍ୟରେ ତମକୁ ଏ ଘରକୁ ବୋହୁ କର ଆଣିଲୁ ।

ସୁମି ପ୍ରଶ୍ନିଳ ଦୃଷ୍ଟିରେ ଗୃହିଁ ରହେ ରଜଙ୍କୁ । ସୁମିର ଗୃହାଣୀରୁ ରଜ୍ ଠିକ୍ ବୁଝିପାରେ ଯେ ସୁମିଙ୍କ ମନରେ କେଉଁ ପ୍ରଶ୍ନବାଚୀ ସୃଷ୍ଟି ହୋଇଛ । ସୁମି ଓଠ ଖୋଲ ରଜଙ୍କୁ କଛ ପଗ୍ଚରବା ପୂର୍ବରୁ ରଜ୍ କୁହେ, ଗୃକର ଗୃକରଣୀ ପ୍ରସଙ୍ଗକୁ ତମେ ସମ୍ମୁଖକୁ ଆଣିଥିବାରୁ ତମର ଜାଣି ରଖିବା ଉଚତ କ ଏ ଘରକୁ ଆଉ କେବେ ଗୃକର ବାକର ଆସିବେ ନାହିଁ କ ତାଙ୍କ ପାଇଁ ଆମକୁ ଆଉ ଅଯଥା ଖର୍ଚ୍ଚାନ୍ତ ହେବାକୁ ପଡ଼ିବ ନାହିଁ । କାରଣ ଆମକୁ ବନା ଖର୍ଚ୍ଚରେ ବନା ପଇସାରେ ଗୃକରଣୀଟିଏ ମିଳଯାଇଛ, ମାନେ ତମେ ଆମକୁ ମିଳଯାଇଛ । ଏଣିକ ଆମକୁ ଆଉ ଚନ୍ତା ନାହିଁ ।





ରାଜଙ୍କ ପାଟିରୁ ଏ କଥା ପଦକ ଶୁଣି ସୁମିର ଛାତି ଫାଟିଗଲା ପରି ଲାଗେ । ପାଦତଳେ ମାଟି ଖସିଗଲା ପରି ମନେହୁଏ । ତାର ସବୁ ରଙ୍ଗୀନ ସ୍ୱପ୍ନ ଭାଙ୍ଗି ଚୁରମାର ହୋଇଯାଏ । ସତେ ଯେମିତି ଆକାଶଟା ମାଡ଼ିବସେ ସୁମି ଉପରେ । ଚକ୍ଷୁକୋଣରେ ଜକେଇ ଆସେ ଉଷ୍ଣ ଲୁହଧାର ।

ହେଲେ ସୁମି ପରି ଗୋଟେ ଚରିତ୍ର ରାଜଙ୍କ ପାଟିରୁ ତା ପ୍ରତି ଏମିତି ଅସମ୍ମାନ କଲାପରି ଶବ୍ଦ ଶୁଣିଲା ପରେ କେମିତି ଅବା ଚୁପ୍ ରହିଥାନ୍ତା ? ଉତ୍ୟକ୍ତ ହୋଇ ଆକ୍ରୋଶଭରା ସ୍ୱରରେ କହିଯାଏ ଅନେକ କଟୁବାକ୍ୟ ନିଃସଙ୍କୋଚରେ । ଯେଉଁଟା କି ରାଜ ସୁଶ୍ରବଣ କରି ନିଜକୁ ଆୟତ୍ତରେ ରଖିପାରେ ନାହିଁ, ବସାଇଦିଏ ସୁମିର ଗାଲରେ କେତୋଟି ଶକ୍ତ ଚାପୁଡ଼ା । ହେଲେ ମଧ୍ୟ ରାଜଙ୍କୁ ଆତ୍ମତୃପ୍ତି ମିଳେନାହିଁ, ସାଙ୍ଗେ ସାଙ୍ଗେ ଅଣ୍ଟାରେ ବେଲ୍ଟ ଖୋଲିଦେଇ ପ୍ରହାର ଉପରେ ପ୍ରହାର କରିଚାଲେ ସୁମିର ଶରୀରର ବିଭିନ୍ନ ଅଙ୍ଗକୁ, ଆଉ ଗଳାଧକ୍କାମାରି ତଡ଼ିଦିଏ ଶୟନ କକ୍ଷରୁ । ହେଲେ ସୁମି ଅଧୈର୍ଯ୍ୟ ଶରୀରରୁ କେଉଁ କୋଣ ପ୍ରତିକୋଣରୁ ଧୈର୍ଯ୍ୟକୁ ଏକତ୍ର କରି ନାଲି ଆଖି ଦେଖାଇ କୁହେ, ମୁଁ ହେଲି ତୁମ ବିବାହିତା ସ୍ତ୍ରୀ, ତେଣୁ ମୋର ମଧ୍ୟ ଏ କକ୍ଷରେ ଅଧିକାର ଅଛି ଆଉ ତମ ଉପରେ ମଧ୍ୟ । ମୋର ଅନିଚ୍ଛା ସତ୍ତ୍ୱେ ମତେ ତମଠାରୁ କିମ୍ବା ଏ କକ୍ଷରୁ କେହି ଅଲଗା କରିପାରିବେ ନାହିଁ ।

ହାତରେ ଧରିଥିବା ବେଲ୍ଟକୁ ସୁମି ବେକରେ ପକାଇ ଟାଣିନିଏ ସନ୍ନିକଟ କକ୍ଷକୁ ଆଉ ବିକଟାଳ ଭଙ୍ଗିରେ ମୁଖମଣ୍ଡଳକୁ ସଜାଇ କୁହେ ରାଜ ଶୁଣ, ତୁ ଆଉ ତୋ ପରିବାର ଆମ ଚପଲ ତଳର ଧୂଳି ସହିତ ସମାନ । ତମପରି ନିଃସ୍ୱତା ପରିବାର ଆମପରି ଗୋଟିଏ ରାଜକୀୟ ପରିବାର ସହିତ ବନ୍ଧୁବାନ୍ଧିବା କଣ ଔକାତ୍ ଅଛି ବେ ? ଖାଲି ଆମକୁ ଗୋଟେ ବିନା ପଇସାରେ ଚାକରାଣୀଟିଏ ଦରକାର ଥିଲା । ବୋଲି ସମାଜର ଦାରିଦ୍ର ସୀମାରେଖାରେ ଚାପି ହୋଇ ରହୁଥିବା ପରିବାରରୁ ନିରାଡ଼ମ୍ବରତାପୂର୍ଣ୍ଣ ଝିଅଟିଏ ଲୋଡୁଥିଲୁ । ସେଥିପାଇଁ ମୋର ପ୍ରଥମ ସ୍ତ୍ରୀ ଥାଇ ମଧ୍ୟ ତତେ ବିବାହ କରିଥିଲି ମୁଁ, ବୁଝିଲୁ ? ଆଉ ବେଶୀ ସ୍ତ୍ରୀ ଅଧିକାର ସାବ୍ୟସ୍ତ ନ କରି ଚୁପଚାପ୍ ନିଜ କାମରେ ଲାଗିପଡ଼ ।

ରାଜ ସୁମି ବେକରୁ ବେଲ୍ଟଟା ହଟାଇ ଗୋଟେ ଶକ୍ତ ଧକ୍କାମାନେ ଫଳବିସତଃ ସୁମି କଚାଡ଼ି ହୋଇ ତଳେ ପଡ଼ିଯାଏ । ରାଜ କକ୍ଷ ଭିତରକୁ ପ୍ରବେଶ କରିବା ଉଦ୍ଦେଶ୍ୟରେ ସୁମି ମୁହଁ ବୁଲେଇ ନିଏ ପୁଣି ମୁହଁ ଫେରାଇ ତାଗିଦ୍ କରି କହେ ଆଜି ମୋ ସ୍ତ୍ରୀ ସୁରେଆ ତାର ସ୍ୱନିର୍ମିତ କମ୍ପାନୀ କାର୍ଯ୍ୟରୁ କିଛି ଦିନ ନିଜକୁ ନିବୃତ୍ତିକରି ଘରକୁ ଫେରୁଛି, ତାର ସେବାରେ ଯେମିତି କୌଣସି



ଅବହେଳା ବା ଅନିୟମିତତା କି ଅପ୍ରୀତିକର ପରିସ୍ଥିତି ସୃଷ୍ଟି ନହୁଏ । ନଚେତ୍ ମୋର ଅସଲ ରୂପ ଦେଖିବୁ । ଆଉ ହଁ ତୁ ଆଜଠାରୁ ଆମର ଗୃହକର୍ତ୍ତ୍ରୀଙ୍କ ପାଇଁ ତିଆରି ହୋଇଥିବା କକ୍ଷରେ ରହିବୁ କହି ମୁରୁକି ହସି ଚାଲିଯାଏ ରାଜ ।

ରାଜକୁ ଆଉ ପାଟି ଫିଟାଇ କିଛି କହିବା ଧୈର୍ଯ୍ୟ କି ସାହାସ ମଧ୍ୟ ନଥାଏ ସୁମିର । କେବଳ ନିର୍ବାଦ ହୋଇ ଚାହିଁ ରହିଥାଏ ରାଜ ଚାଲିଯାଉଥିବା ପଥକୁ । ବୋହି ପଡୁଥାଏ ଚକ୍ଷୁଦ୍ୱୟରୁ ଧାର ଧାର ଅଜସ୍ର ଅଶ୍ରୁ । ମନ ଭିତରେ ଆପେ ଆପେ ମେଲି ହୋଇଯାଏ ପୃଷ୍ଠାପରେ ପୃଷ୍ଠା ତାର ବିଗତ ଦିନର ସମସ୍ତ କଳାକୀର୍ତ୍ତି । ଗୋଟିଏ ପରେ ଗୋଟିଏ ଦୃଶ୍ୟ ନାଚିଯାଆନ୍ତି ତାର ସମ୍ମୁଖରେ ସୃଷ୍ଟି ହୁଏ ମନଭିତରେ ଆତ୍ମଗ୍ଲାନିର ଭାବନା ।

କୁଚିଣ୍ଡା, ରାମଜପଡ଼ା

ସମ୍ବଲପୁର, ୭୬୮୨୨୨

ଦୂରଭାଷ - ୯୫୮୩୩୨୨୧୪୩





# ଭଗବତ ଗୀତା

ଜୀବନଦର୍ଶନର ଗୁଢ଼ତତ୍ତ୍ୱ : ଭଗବତ ଗୀତା

କଣ ଆପଣ ଜାଣନ୍ତି, ଶ୍ରୀମଦ୍ ଭଗବତ ଗୀତା ବିଷୟରେ ସମ୍ୟକ୍ ସୂଚନା

୧. ପ୍ରଶ୍ନ : ଏହା କିଏ କାହାକୁ କହିଥିଲେ ?

ଉତ୍ତର : ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ ।

୨. ପ୍ର : ଏହା କେବେ କୁହାଯାଇଥିଲା ?

ଉ : ଅନ୍ୟୁନ ସାତ ହଜାର ବର୍ଷ ପୂର୍ବେ ।

୩. ପ୍ର : ଏହା କେଉଁଦିନ କୁହାଯାଇଥିଲା ?

ଉ : ଏହା ରବିବାର ଦିନ କୁହାଯାଇଥିଲା ।

୪. ପ୍ର : ସେହି ଦିନ କେଉଁ ତିଥି ଥିଲା ?

ଉ : ଏକାଦଶୀ ତିଥି ।

୫. ପ୍ର : କେଉଁଠାରେ ଶୁଣାଇଥିଲେ ?

ଉ : କୁରୁକ୍ଷେତ୍ରର ଯୁଦ୍ଧଭୂମିରେ ।

୬. ପ୍ର : କେତେ ସମୟରେ ଏହା ଶୁଣାଇଥିଲେ ?

ଉ : ୪୫ ମିନିଟ ସମୟରେ ।

୭. ପ୍ର : କାହିଁକି କୁହାଯାଇଥିଲା ?

ଉ : କର୍ତ୍ତବ୍ୟ ପଥରେ ଓହରି ଯାଉଥିବା ପାର୍ଥଙ୍କୁ ଯୁଦ୍ଧକ୍ଷେତ୍ରରେ କର୍ତ୍ତବ୍ୟ ଶିଖାଇବା ତଥା ଆଗାମୀ ବଂଶଧରଙ୍କୁ ଧର୍ମର ପଥ ପ୍ରଦର୍ଶନ ହେତୁ ଏହା କୁହାଯାଇଥିଲା ।

୮. ପ୍ର : ଗୀତାରେ କେତେ ଅଧ୍ୟାୟ ରହିଛି ?

ଉ : ସମୁଦାୟ ୧୮ ଟି ଅଧ୍ୟାୟ ।

୯. ପ୍ର : ଗୀତାରେ କେତୋଟି ଶ୍ଳୋକ ରହିଛି ।

ଉ : ସମୁଦାୟ ୭୦୦ ଟି ଶ୍ଳୋକ ।

୧୦. ପ୍ର : ଗୀତାରେ କଣ ସବୁ କୁହାଯାଇଛି ?

ଉ : ଜ୍ଞାନ - ଭକ୍ତି - କର୍ମ ଯୋଗର ପଥ ବିଷୟରେ ବିସ୍ତୃତ ଭାବରେ ବ୍ୟାଖ୍ୟା କରାଯାଇଛି । ଏହି ସବୁ ପଥ ଅନୁସରଣ କରି ମନୁଷ୍ୟ ପରମପଦ ଲାଭ କରିପାରିବ ।

୧୧. ପ୍ର : ଗୀତାକୁ ଅର୍ଜୁନଙ୍କ ବ୍ୟତୀତ କିଏ ଶୁଣିଥିଲେ ?

ଉ : ଧୃତରାଷ୍ଟ୍ର ଏବଂ ସଂଜୟ ।

୧୨. ପ୍ର : ଅର୍ଜୁନଙ୍କ ପୂର୍ବରୁ ଗୀତାର ପବିତ୍ର ଜ୍ଞାନ କାହାକୁ ମିଳିଥିଲା ?





ଉ : ସୂର୍ଯ୍ୟଦେବଙ୍କୁ ।

୧୩. ପ୍ର : ଗୀତା କେଉଁ ଧର୍ମଗ୍ରନ୍ଥ ଅନ୍ତର୍ଭୂକ୍ତ ?

ଉ : ଉପନଷଦ ।

୧୪. ପ୍ର : ଗୀତା କେଉଁ ମହାଗ୍ରନ୍ଥର ଅଂଶ ?

ଉ : ମହାଭାରତର ଶାନ୍ତ ପର୍ବର ଏକ ଅଂଶ ।

୧୫. ପ୍ର : ଗୀତାର ଅନ୍ୟନାମ କଣ ?

ଉ : ଗୀତୋପନଷଦ ।

୧୬. ପ୍ର : ଗୀତାର ସାରମର୍ମ କଣ ?

ଉ : ପ୍ରଭୁ ଶ୍ରୀକୃଷ୍ଣଙ୍କ ଶରଣ ନେବା ।

୧୭. ପ୍ର : ଗୀତାରେ କଏ କେତୋଟି ଶ୍ଲୋକ କହଥିଲେ ?

ଉ : ଶ୍ରୀ କୃଷ୍ଣ - ୫୭୪

ଅର୍ଜୁନ - ୮୫

ଧୃତରାଷ୍ଟ୍ର - ୧

ସଂଜୟ - ୪୦

୧୮. ପ୍ର : ଗୀତା ପଠନ ଦ୍ୱାରା କଣ ହୁଏ ?

ଉ : ମନୁଷ୍ୟ ଉଚତ ଜୀବନଯାପନ କରଥାଏ ।

ଆମର ଯୁବପୀଢ଼ିକୁ ଗୀତା ବଷୟରେ ସୂଚନା ଦେବା ନମନ୍ତେ ଏହ ପ୍ରଶ୍ନୋତ୍ତର ଉପସ୍ଥାପନା କରାଯାଇଛ ।

ବ.ଦ୍ର.: ଏହ ପ୍ରଶ୍ନୋତ୍ତର ହ୍ୱାଟ୍‌ସଆପ୍‌ରେ ପ୍ରସାରତ ଏକ ସମ୍ବାଦର ଓଡ଼ିଆ ଭାଷାନ୍ତରଣ ମାତ୍ର ।





# ତେତଶି କୋଟି ଦେବତା ?

ସତରେ କଣ ତେତଶି କୋଟି ଦେବତା ଅଛନ୍ତ ?

ହନ୍ଦୁ ଧର୍ମରେ ତେତ୍ରଶ କୋଟି ଦେବୀଦେବତା ନାହାନ୍ତ ।

ଆମେ ସମସ୍ତେ ଊଣା ଅଧିକେ କହଥାଉ ଯେ ହନ୍ଦୁ ଧର୍ମରେ ତେତଶି କୋଟି ଦେବୀ ଦେବତା ଅଛନ୍ତ । କଛ ବନ୍ଧୁ ସୋସିଆଲ୍ ମେଡ଼ିଆରେ ଶେୟାର୍ ବ କରନ୍ତ ଯେ ଯଦ ପ୍ରତ ଦେବୀ ଦେବତା ଟଙ୍କାଟିଏ ଲେଖାଏଁ ବ ଦଅନ୍ତ ତେବେ ବ ଆମର ଉନ୍ନତ ହୋଇଯାଆନ୍ତା । କନ୍ତୁ ବାସ୍ତବରେ କଣ ହନ୍ଦୁମାନଙ୍କର ତେତଶି କୋଟି ଦେବୀ ଦେବତା ଅଛନ୍ତ ?

ମନେ ରଖନ୍ତୁ ଭାରତ ସ୍ୱାଧୀନ ହେବା ବେଳକୁ ଭାରତର ଜନସଂଖ୍ୟା ସେଇ ତେତଶି କୋଟି ପାଖାପାଖି ଥିଲା । ଏହାର ଅର୍ଥ ଶହେ ବର୍ଷ ପୂର୍ବେ ଭାରତର ଜନସଂଖ୍ୟାଠାରୁ ଅଧିକ ଦେବୀ ଦେବତା ଥିଲେ ? ଏହା ଶୁଣିବାକୁ ଯେମିତ ହାସ୍ୟାସ୍ପଦ ଲାଗୁଛ ବଶ୍ୱାସ କରବାକୁ ସେମିତ ଲାଗୁଛ । ପ୍ରକୃତ ତଥ୍ୟ କନ୍ତୁ ଅଲଗା ।

ଆମେ ଦେବଭାଷା ସଂସ୍କୃତକୁ ସଠିକ ଭାବରେ ବୁଝିନପାର ଏହପ୍ରକାରର ପରସଂଖ୍ୟାନ ନଜେ ନଜେ ସୃଷ୍ଟି କରଦେଇଛୁ ।

ସଂସ୍କୃତ ଭାଷାରେ କୋଟି ଶବ୍ଦର ଦୁଇଟି ଅର୍ଥ ଅଛ । ପ୍ରଥମ ଟି ହେଲା କୋଟି ମାନେ ସଂଖ୍ୟାରେ କୋଟି ବା ଦଶ ନୟୁତକୁ କୋଟି କୁହାଯାଏ, ଆଉ ଏକ ଅର୍ଥ ହେଉଛ ପ୍ରକାର ବା କସମର । ଏଠି ହନ୍ଦୁମାନଙ୍କର ଦେବୀ ଦେବତାଙ୍କ ସଂଖ୍ୟା ତେତଶି କୋଟି କହବାର ଅର୍ଥ ହେଉଛ, ତେତଶି ପ୍ରକାରର ଦେବୀ ଦେବତା । ଆମେ ସଠିକ୍ ଭାବରେ ତ କହପାରବା ନାହିଁ ଯେ ଏହ ତେତଶି କୋଟି ସଂଖ୍ୟା କଥା ପ୍ରଥମେ କଏ ଆଉ କେତେବେଳେ କହଥିଲା, କନ୍ତୁ ସମ୍ଭବତଃ ଏହା ବ୍ୟଙ୍ଗାତ୍ମକ ଭାବରେ ହିଁ କେହ କହଥିବ ବୋଲ ଆମେ ମାନୁ । କନ୍ତୁ ପ୍ରକୃତ ତଥ୍ୟ ହେଉଛ ଆମ ଧର୍ମରେ ମାତ୍ର ତେତଶି ପ୍ରକାରର ଦେବୀ ଦେବତା ରହବା କଥା ଜ୍ଞାନୀ ମାନେ କୁହନ୍ତ । ସେମାନେ ହେଲେ ;

୧. ପ୍ରଥମ ପ୍ରକାର (୧୨)





ଆଦତ୍ୟ, ଧାତା, ମିତ, ଆର୍ଯ୍ୟମା, ଶକ୍ର, ବରୁଣ, ଅଂଶ, ଭଗ, ବବାସ୍ୱାନ, ପୁଷ, ସବତା, ତବାଷ୍ଟା ଏବଂ ବଷ୍ଣୁ

୨. ଦ୍ୱତୀୟ ପ୍ରକାର (୮)

ବାସୁ, ଧର, ଧ୍ରୁବ, ସୋମ, ଅହ, ଅନଳ, ଅନଳ, ପ୍ରତ୍ୟୁଷ, ପ୍ରଭାଷ

୩. ତୃତୀୟ ପ୍ରକାର (୧୧)

ରୁଦ୍ର, ହର, ବହୁରୂପ, ତ୍ରୟଂବକ୍, ଅପରାଜତା, ବୃଷାକାପି, ଶଂଭୂ, କପାର୍ଦୀ, ରେବାତ୍, ମୃଗବ୍ୟାଧ, ଶର୍ବା, କପାଳୀ

୪. ଚତୁର୍ଥ ପ୍ରକାର (୨)

ଅଶ୍ୱିନୀ ଏବଂ କୁମାର

ସମୁଦାୟ - ୧୨ + ୮ + ୧୧ + ୨ = ୩୩ ପ୍ରକାର ବା କୋଟି

ବର୍ତ୍ତମାନ ଆପଣ ଜାଣିପାରିଥିବେ ଆମ ଧର୍ମରେ କେତେ ଦେବୀଦେବତା ଅଛନ୍ତି ।



# ଇଦ୍ ଓ ଢାକାର ରକ୍ତନଦୀ

ବର୍ଷା, ଇଦ୍ ଏବଂ ଢାକାର ରକ୍ତ ନଦୀ

ଦୁନଆର ବଭନ୍ନ ପ୍ରାନ୍ତରେ ବକରଦ୍‌ର ଉତ୍ସାହ ରହଥିବା ବେଳେ ସର୍ବାଧିକ ପ୍ରସାରତ ହୋଇଥିବ ଢାକାର ଛବ କାହିଁକ !!!

ମୁସଲମାନ୍ ମାନଙ୍କ ଏକ ପ୍ରମୁଖ ପର୍ବ ଇଦ୍-ଇଜ୍-ଜୁହାରେ ପାଳନ ହେଉଥିବା ବଳଦାନ (ବକରଦ୍ / ବକରୀ ଅର୍ଥାତ ଛେଳ କମ୍ବା ଅନ୍ୟ ପଶୁଙ୍କୁ ହତ୍ୟା କରବା) ପର୍ବ ଯେ ଏକ ସମ୍ପୁଦାୟ ସହରକୁ ରକ୍ତର ନଦୀରେ ପରଣତ କରଦେବ ଏହା କେହ କେବେ ସ୍ୱପ୍ନରେ ସୁଦ୍ଧା ଚନ୍ତା କରନଥିବେ । ଏମିତ ଏକ ଅଭାବନୀୟ ଘଟଣା ଘଟିଗଲା, ଚଳତ ସପ୍ତାହରେ ଅନୁଷ୍ଠିତ ବକରଦ୍ ପରେ ପରେ ।

ମୁସଲ୍‌ମାନ ବହୁଳ ବାଙ୍ଗଲାଦେଶରେ ବକରଦ୍ ଅତ୍ୟନ୍ତ ଉତ୍ସାହର ସହତ ପାଳନ କରାଯାଏ ଏବଂ ଏହ ସମୟରେ ଅଗଣିତ ପଶୁଙ୍କୁ ବଳଦଆ ଯାଇଥାଏ । ବଗତ ବର୍ଷ ଏହାକୁ ଆଖି ଆଗରେ ରଖି ପ୍ରଶାସନ ତରଫରୁ ସହରରେ ଅନ୍ୟୁନ ଏକ ହଜାର ସ୍ଥାନ ସ୍ଥିର କରାଯାଇଥିଲା, ଯେଉଁଠି ଲୋକମାନେ ଏକତ୍ରିତ ହୋଇ ଏହ ପର୍ବକୁ ପାଳନ କରପାରବେ, କନ୍ତୁ ଅଧିକାଂଶ ଲୋକ ନଜ ଘର ସମ୍ମୁଖରେ ହିଁ ବଳ ଦେବାକୁ ଉଚତ ମନେ କରଥିଲେ । ଦୁର୍ଭାଗ୍ୟର ବଷୟ ମଙ୍ଗଳବାର ପ୍ରାତଃ କାଳରୁ ଅନବରତ ଭାବରେ ହେଉଥିବା ବର୍ଷା ହେତୁ ସହରରେ ବର୍ଷାଜଳ ନଷ୍କାସନ କରବା ଅସମ୍ଭବ ହେଉଥିବା ବେଳେ, ବକରଦ୍‌ରେ କଟାଯାଉଥିବା ପଶୁମାନଙ୍କ ରକ୍ତ ଏହ ବର୍ଷା ଜଳରେ ମିଶିବା ସହ ସମଗ୍ର ସହରରେ ଏକ ଅତ୍ୟନ୍ତ ବଭତ୍ସ ଦୃଶ୍ୟ ସୃଷ୍ଟି କରଥିଲା । ଅବଶ୍ୱସନୀୟ ଭାବରେ ଢାକା ସହରର ରାଜରାସ୍ତାରେ ରକ୍ତର ନଦୀ ବହବାକୁ ଲାଗିଥିଲା । ଏହାକୁ ଦେଖିବା ଲୋକମାନେ ଏହାକୁ ଭନ୍ନ ଭନ୍ନ ଭାବରେ ଗଣମାଧ୍ୟମ ଓ ସୋସିଆଲ୍ ନେଟ୍‌ୱାର୍କିଂ ରେ ଅନ୍ୟମାନଙ୍କୁ ଦେଖାଇବାକୁ ଉତ୍ସୁକ ଜଣାପଡୁଥିଲେ । ଜନୈକ ବ୍ୟକ୍ତି ଏହାକୁ ଆଧୁନକ ଯୁଗର କଳଙ୍କ (ଦୟାନଦୀ ରକ୍ତରେ ପ୍ଲାବତ ହୋଇଥିବା କଥା ଇତହାସ କହେ) ବୋଲ ମଧ ଆଖ୍ୟା ଦେଇଥିଲେ ।

ସହରର ନାଳ ଗୁଡ଼ିକରେ ଅଧିକରୁ ଅଧିକ ପାଣି ଜମା ହେବାପରେ ଏହା ରାସ୍ତାରେ ବହବାକୁ





ଲାଗିଥିଲା । ଏଥିପାଇଁ ଜନ ସାଧାରଣ ପ୍ରଶାସନକୁ ଦାୟୀ କରିଥିଲେ ଏବଂ ଅନେକେ ମତ ଦେଇଥିଲେ ଯେ ବକରିଦ୍ ପୂର୍ବରୁ ଯଦି ଜଳନିଷ୍କାସନ ବ୍ୟବସ୍ଥା ସୁଦୃଢ଼ ହୋଇଥାନ୍ତା ତା ହେଲେ ଏମିତିକା ଦୃଶ୍ୟ ଦେଖିବାକୁ ମିଳିନଥାନ୍ତା । ଅପର ପକ୍ଷରେ ପ୍ରଶାସନ ଏଥିପାଇଁ ସାଧାରଣ ଜନତାଙ୍କୁ ଦୋଷ ଦେବାର ଦେଖାଯାଇଥିଲା । ପ୍ରଶାସନିକ ଅଧିକାରୀ ଜୋର ଦେଇ କହିଥିଲେ ଯେ ବକରିଦ୍ ସମୟରେ କେବଳ ପ୍ରଶାସନ ଦ୍ୱାରା ଚିହ୍ନଟ ହୋଇଥିବା ସ୍ଥାନରେ ହିଁ ବଳି ଦେବାକୁ କୁହାଯାଇଥିବା ସତ୍ତ୍ୱେ ଲୋକମାନେ ନିଜ ଘର ସମ୍ମୁଖରେ ବଳି ଦେବାକୁ ଉଚିତ ମନେ କରିଥିଲେ, ଯାହା ଫଳରେ ଏମିତି ଅବସ୍ଥା ଦେଖା ଦେଇଛି ।

ସେ ଯା'ହେଉ ଏତେ ସଂଖ୍ୟାରେ ପଶୁଙ୍କୁ ବଳି ଦେବାର ପ୍ରଥା ବିରୋଧରେ ସବୁବେଳେ ଆନ୍ଦୋଳନାତ୍ମକ ପଦକ୍ଷେପ ନେଉଥିବା ଲୋକମାନେ ଏବଂ ପଶୁଙ୍କ ଅଧିକାର ପାଇଁ କାର୍ଯ୍ୟ କରୁଥିବା ସଂଗଠନ ମାନେ ଏହାକୁ ନେଇ କେଉଁ ପ୍ରକାରର ପ୍ରତିକ୍ରିୟା ଦେଖାଇବେ ତାହା ଦେଖିବାକୁ ରହିଲା ।

(ଓଡ଼ିଆଗୁରୁ ଡଟ୍ କମ୍ ୱେବ୍ସାଇଟରୁ ଉଦ୍ଧୃତ ଏହି କ୍ଷୁଦ୍ର ଆଲେଖ୍ୟ ଏବଂ ଏହିପରି ଅନେକ ଆଲେଖ୍ୟ ପଢ଼ିବା ପାଇଁ ଦେଖନ୍ତୁ ଓଡ଼ିଆଗୁରୁ ଡଟ୍ କମ)





ଆହ୍ୱାନର ଆଗାମୀ ସଂସ୍କରଣ ନଭେମ୍ବର ମାସରେ ପ୍ରକାଶିତ ହେବ । ନିଜ ଦ୍ୱାରା ଲିଖିତ କବିତା ଓ କାହାଣୀ ଶୀଘ୍ର ଆମ ନିକଟକୁ ପଠାନ୍ତୁ ।

ଆପଣଙ୍କ ଲିଖିତ କବିତା, କାହାଣୀ, ଭ୍ରମଣ କାହାଣୀ, ଶିଶୁକଥା, ଜୀବନ କଥା, ଇତିହାସ, ରୋଷେଇ, ଘରକରଣା, ସ୍ୱାସ୍ଥ୍ୟ, ବ୍ୟଙ୍ଗ ଇତ୍ୟାଦି ଆପଣ ଇ-ମେଲ୍ ଦ୍ୱାରା ଆମ ନିକଟକୁ ପଠାଇ ପାରିବେ ।

ଆମ ଇ-ମେଲ୍ ଠିକଣା :

# aahwaan@gmail.com

ଚିଠି ମାଧ୍ୟମରେ ଲେଖା ପ୍ରେରଣ କରିବା ଠିକଣା

## ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ସମ୍ପାଦକ, 'ଆହ୍ୱାନ ଇ-ପତ୍ରିକା'

ବୀମାନଗର, ୨ୟ ଗଳି, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା

ଫୋନ : ୯୦୪୦୯୮୫୪୬୩ / ୭୦୦୮୫୬୭୦୮୫





# ବଶେଷ ସୂଚନା

ଆହ୍ୱାନ ଇ-ପତ୍ରକା ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ସଂପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ସାହତ୍ୟ ଇ-ପତ୍ରକା । ଏହା ପ୍ରତ୍ୟେକ ମାସର ପ୍ରଥମ ସପ୍ତାହରେ ପ୍ରକାଶିତ ହୋଇଥାଏ । ବେଳେ ବେଳେ ପୂଜା ପର୍ବପର୍ବାଣୀ ସମୟରେ ସମୟୋପଯୋଗୀ ବଶେଷ ସଂସ୍କରଣମାନ ମଧ୍ୟ ପ୍ରକାଶିତ ହୁଏ । ଓଡ଼ିଆ ସାହତ୍ୟର ବଭିନ୍ନ ବଭାଗ ଯଥା, ଗଳ୍ପ, କବତା, ପ୍ରବନ୍ଧ, ରମ୍ୟ ରଚନା, ଶିଶୁ ରଚନା, ଭ୍ରମଣ କାହାଣୀ ଇତ୍ୟାଦ ଏଥିରେ ପ୍ରକାଶିତ ହୁଏ ।

ଏହ ପତ୍ରକାରେ ଲେଖା ପ୍ରକାଶିତ କରବା ପାଇଁ ନୂଆ ଓ ପୁରୁଣା ଉଭୟ ସାହତ୍ୟକାରଙ୍କୁ ପ୍ରୋତ୍ସାହନ ଦଆଯାଇଥାଏ । ଯେହେତୁ ଏହ ପତ୍ରକା ନଃଶୁଳ୍କ ବତରଣ ନମିତ୍ତ ଉଦ୍ଦିଷ୍ଟ ତେଣୁ ଲେଖକ, ଲେଖିକାମାନଙ୍କୁ କୌଣସି ପ୍ରକାରର ପ୍ରୋତ୍ସାହନ ରାଶି ଦଆଯାଏ ନାହିଁ । ପାରଶ୍ରମିକ ଆଶା କରୁଥିବା ଲେଖକ ଲେଖିକାମାନେ ନଜ ଲେଖା ବ୍ୟବସାୟିକ ପତ୍ରପତ୍ରକାକୁ ପଠାଇ ପାରବେ ।

ଏହ ପତ୍ରକା ପ୍ରତ୍ୟେକ ମାସରେ ଇଣ୍ଟରନେଟ୍‌ରେ ନଃଶୁଳ୍କ ପଢ଼ିବା ପାଇଁ ଉପଲବ୍ଧ ହୋଇଥାଏ । ପାଠକ ଚାହିଁଲେ ଏହ ପତ୍ରକାର ଗୋଟିଏ ପ୍ରତଲିପି ନଜ କଂପ୍ୟୁଟରରେ ଡ଼ାଉନ୍‌ଲୋଡ୍ କର ପାରବେ ।

ଲେଖକ ଲେଖିକାମାନେ ନଜ କୃତ ଆମ ନକଟକୁ ଡ଼ାକଦ୍ୱାର କମ୍ବା ଇ-ମେଲ୍ ଦ୍ୱାର ପଠାଇ ପାରବେ । ଡ଼ାକ ଦ୍ୱାର ପଠାଉଥିଲେ ନଜ ଲେଖାକୁ ଧଳା କାଗଜର ଗୋଟିଏ ପାର୍ଶ୍ୱରେ ନର୍ଭୁଲ ହସ୍ତାକ୍ଷରରେ ଲେଖି ପଠାନ୍ତୁ, କମ୍ବା ଟାଇପ୍ କର ମଧ୍ୟ ପଠାନ୍ତୁ । ଇ-ମେଲ୍ ଦ୍ୱାର ପଠାଉଥିଲେ ଲେଖାକୁ ଲେଖି ସାରବ ପରେ ସ୍କାନଂ କର ଆମ ଇ-ମେଲ୍ ଠିକଣାରେ ପଠାନ୍ତୁ ।

ଆହ୍ୱାନର ପ୍ରକାଶନ ସଂପୂର୍ଣ୍ଣ ପରବେଶ ଅନୁକୂଳ, କାରଣ ଏହାଦ୍ୱାର କାଗଜର ବ୍ୟବହାର କମ ହୋଇଥାଏ, ଯେଉଁଥିପାଇଁ ଗଛ କାଟିବାକୁ ପଡ଼େନାହିଁ । ଆମେ ପରବେଶ ପ୍ରଦୁଷଣ ବରୋଧ କରୁ ।

ଆହ୍ୱାନ ଇ-ପତ୍ରକାରେ ଲେଖା ପ୍ରକାଶିତ କରବାପାଇଁ ଯଦ ଆପଣ ଇଚ୍ଛୁକ ତେବେ ନଜ



ଲଖିତ କୃତକୁ ଆପଣ ଆମ ନକଟକୁ ପଠାନ୍ତୁ । ଯେହେତୁ ଏହ ପତ୍ରିକା ଇଣ୍ଟରନେଟରେ ପ୍ରକାଶିତ ହୁଏ ଏବଂ ପ୍ରତ୍ୟେକ ମାସରେ ଶହସ୍ରାଧିକ ଓଡ଼ିଆଙ୍କ କମ୍ପ୍ୟୁଟରରେ ଶୋଭାପାଏ ତେଣୁ ଏହ ପତ୍ରିକାପାଇଁ ଲେଖା ମଧ୍ୟ ଇଣ୍ଟର୍‌ନେଟ ମାଧ୍ୟମରେ ହିଁ ଗ୍ରହଣ କରାଯାଏ । ଯଦ ଆପଣ ଇ-ମେଲ୍ ଦ୍ୱାରା ଆମ ନକଟକୁ ଲେଖା ପଠାଇ ପାରବେ ନାହିଁ, ତେବେ ଆପଣ ନଜ ଲେଖା ଧଳା କାଗଜରେ ଗୋଟିଏ ପାର୍ଶ୍ୱରେ ନର୍ମଳ ହସ୍ତାକ୍ଷରରେ ଲେଖି ଆମ ନକଟକୁ ନମ୍ନ ଠିକଣାରେ ପଠାଇ ପାରବେ ।

ଡା ଜ୍ୟୋତ ପ୍ରସାଦ ପଟ୍ଟନାୟକ

ବୀମା ନଗର - ୨ୟ ଗଳ

ଆମ୍ବପୁଆ, ବ୍ରହ୍ମପୁର - ୭୬୦୦୧୦

ଓଡ଼ିଶା, ଫୋନ୍: ୯୦୪୦୯୮୫୪୬୩ / ୯୮୬୧୯୬୨୧୬୦

ଯଦ ଆପଣ ଇଣ୍ଟର୍‌ନେଟ୍ ମାଧ୍ୟମରେ ଲେଖା ପଠାଇବାକୁ ଗୃହାନ୍ତୁ ତେବେ ନଜ ଲେଖାକୁ ଟାଇପ୍ (ଓଡ଼ିଆ ୟୁନକୋଡ଼ ଫଣ୍ଟରେ ଟାଇପ୍ କରବେ ଯଥା ଅପ୍ରାନ୍ତ ଓଡ଼ିଆ / ଗୁଗୁଲ୍ ଓଡ଼ିଆ ଟ୍ରାନ୍‌ସ୍‌ଲଟେରେସନ୍) କର Microsoft Word Document ରେ ଆମ ନକଟକୁ ପଠାନ୍ତୁ, କମ୍ବା ଲେଖାକୁ ସ୍କାନ୍ କର ଜେପିଇଜ ଫର୍ମାଟରେ ଇମେଲ୍ Attachment କର ପଠାନ୍ତୁ । ଆମ ଇ-ମେଲ୍ ଠିକଣା ହେଲା - aahwaan@gmail.com

ଏହ ପତ୍ରିକା ଉନ୍ନତ ହେତୁ ଆପଣଙ୍କ ସହାୟତା ଆମର ଏକାନ୍ତ କାମ୍ୟ ।

ଧନ୍ୟବାଦ

## ଡା ଜ୍ୟୋତ ପ୍ରସାଦ ପଟ୍ଟନାୟକ

ପ୍ରତଷ୍ଠାତା-ସମ୍ପାଦକ, 'ଆହ୍ୱାନ'

## ଜୟ ଓଡ଼ିଆ । ଜୟ ଓଡ଼ିଶା । ଜୟ ଜଗନ୍ନାଥ

ଯଦ ଏହ ସଂସ୍କରଣରେ କୌଣସି ତ୍ରୁଟିଥାଏ, ସେଥିପାଇଁ ସମ୍ପାଦକ କ୍ଷମାପ୍ରାର୍ଥୀ ।



ଆହ୍ୱାନ ଇପତ୍ରକା ଏବଂ ଆହ୍ୱାନ ଓଡ଼ିଆ ପରବାରର ହ୍ୱାଟ୍ସଆପ୍ ଗ୍ରୁପର ସଦସ୍ୟ ହେବାପାଇଁ ଆମ ହ୍ୱାଟ୍ସଆପ୍ ନମ୍ବରକୁ ନଜ ମୋବାଇଲରେ ସ୍ଥାପିତ (Save) କରନ୍ତୁ । ଏବଂ ଆମକୁ ସନ୍ଦେଶ (Message) ଦଅନ୍ତୁ ।

ଆମ ହ୍ୱାଟ୍ସଆପ୍ ଗ୍ରୁପ୍ର ନମ୍ବର ହେଉଛି :

# 9040985463